# ମୋ ଗାଁ ମୋ ସ୍ମୃତି

## କଜଲାଇପଲ୍ଲୀ



ବୈକୁଣ୍ଠନାଥ ମହାପାତ୍ର

# ମୋ ଗାଁ ମୋ ସ୍ମୃତି
# କଳକଲାଇପଲ୍ଲୀ

ବୈକୁଣ୍ଠ ନାଥ ମହାପାତ୍ର

ମୋ ଗାଁ ମୋ ସ୍ମୃତି : କଜଳାଇପଲ୍ଲୀ
ବୈକୁଣ୍ଠ ନାଥ ମହାପାତ୍ର
ଏମ୍-୮୫, ବରମୁଣ୍ଡା ହାଉସିଂ ବୋର୍ଡ କଲୋନୀ
ଭୁବନେଶ୍ୱର-୭୫୧୦୦୩ ମୋ : ୯୮୫୩୬୨୦୬୯୧
ପ୍ରକାଶିକା :
କଳ୍ପନା ମହାପାତ୍ର
ପ୍ରକାଶନ କାଳ :
ନଭେମ୍ବର ୩୦, ୨୦୨୧ (ମାର୍ଗଶୀର କୃଷ୍ଣ ଏକାଦଶୀ)
ମୁଦ୍ରଣ : ଦିବ୍ୟ ମୁଦ୍ରଣୀ
ଦିବ୍ୟ ବିହାର, ସାମନ୍ତରାପୁର, ଭୁବନେଶ୍ୱର
ପ୍ରଚ୍ଛଦ : ବିଭୁପ୍ରସୂନ
ମୂଲ୍ୟ : ଟ. ୧୬୦/-

Mo gaon Mo Smruti : Kajalaipalli
Writer : **Baikuntha nath Mohapatra**
M-85, Baramunda Housing Board Colony
Bhubaneswar-751003, Mob : 9853620691
Publisher : Kalpana Mohapatra
1st Edition : November 30, 2021
(Margasira Krushna Ekadasi)
Printing : **Divya Mudrani**, Divya Vihar
Samantarapur, Bhubaneswar-2
Cover Design : Bibhuprasuna
Price : ₹ 160/-

# ଶ୍ରଦ୍ଧାଞ୍ଜଳି

୰ଲୋକନାଥ ମିଶ୍ର (ପଟ୍ଟଯୋଶୀ)



୰ଲିଙ୍ଗରାଜ ମିଶ୍ର



୰ ହାଡୁବନ୍ଧୁ ମିଶ୍ର

ସେଇ ମହାନ୍ ଆତ୍ମା ଯିଏ ନିଜର ବିଚକ୍ଷଣ ବୁଦ୍ଧି ବଳରେ ଆକଳନ କରିପାରିଥିଲେଯେ, ମୁଁ ସିନା ଏଇ ଅଜଣା ଅପହଞ୍ଚ ବଣପାହାଡଘେରା ଶୁଷ୍କଭୂମିରେ ଏକ ବସତି ସ୍ଥାପନା କରୁଚି. ଏ ମାଟିର ମହକ କିନ୍ତୁ ମୋତେ କହୁଚି ଏ ଗାଁର ଟେକ କାଳକାଳକୁ ଚର୍ଚ୍ଚାରେ ରହିବ। ସେ ମହାପୁରୁଷ ୰ଲୋକନାଥ ମିଶ୍ରଙ୍କ ସ୍ୱପ୍ନ ଆଜି ସାକାର ହେଇଚି।

ସବୁ ମଣିଷ ସ୍ୱପ୍ନଦେଖନ୍ତି, କିନ୍ତୁ ସ୍ୱପ୍ନକୁ ସାକାର କରେ ସେଇ ମଣିଷ ଯାହାର ସାଧନା ଓ ସଙ୍କଳ୍ପ ଭିନ୍ନ । ସେପରି ମଣିଷ ହେଉଛନ୍ତି ସେ ବଂଶର ଦାୟାଦ ୰ଲିଙ୍ଗରାଜ ମିଶ୍ର । ଭିତ୍ତିପ୍ରସ୍ତର ସ୍ଥାପନା କରିଥିବା ପିତାମହଙ୍କ ଗାଁକୁ ଉନ୍ନତିର ଶିଖର ଦେଶରେ ପହଞ୍ଚାଇବା ଲକ୍ଷ୍ୟରେ ସଂଘର୍ଷର ବୀଜ ବପନ କରି ଅକାଳରେ ଇହଧାମ ତ୍ୟାଗକଲେ ଓ ଏକ ଆଦର୍ଶ ଗ୍ରାମ ଗଠନ କରିବାର ପ୍ରେରଣା ଦେଇ ଅମର ହୋଇଗଲେ।

ଅଧୁରା ସ୍ୱପ୍ନକୁ ସାକାର କରିବାରେ ଯେଉଁ ଯୋଗଜନ୍ମା ଓ ପତ୍ୟୁତ୍ପନ୍ନବ୍ୟକ୍ତି ବାଧାବିଘ୍ନ ଭ୍ରୂକ୍ଷେପ ନକରି ଉନ୍ନତିର ଡୋରିକୁ  ଧରି ଅଗ୍ରଗାମୀ ହେଲେ, ସିଏ ହେଲେ ୰ହାଡୁବଂନ୍ଧୁ ମିଶ୍ର ।

ସେଇ ମହାନ ପବିତ୍ର ଆତ୍ମାମାନଙ୍କପ୍ରତି ହୃଦୟର ଗଭୀରତମ ପ୍ରଦେଶରୁ ଆମେ ସମସ୍ତ ଗ୍ରାମବାସୀ କୃତଜ୍ଞତା ଜ୍ଞାପନ କରିବା ସହ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଅଛୁଯେ, ଅମର ଆତ୍ମା ସ୍ୱର୍ଗରେ ଥାଇ ଆମପ୍ରତି ସର୍ବଦା ସଦୟ ରହନ୍ତୁ ।



ପୁଣ୍ୟ ସେହି ଜନ୍ମମାଟି ଧନ୍ୟ ସେହି ମାତା ।
ଯା'କୋଳରୁ ଜନମିଲେ ସେଇ ପ୍ରତିଷ୍ଠାତା ॥
ମହତ ପୁରୁଷ ସିଏ ଯିଏ ରୂପ ଦେଲା ।
ତାଙ୍କ ଦୂରଦୃଷ୍ଟି ପାଇଁ ସମ୍ଭବ ହୋଇଲା ॥
ଲୋକନାଥ ମିଶ୍ର ନାମ ପଟ୍ଟଯୋଶୀ ପଦ ।
ରାଜା ସେ ଉପାଧି ଦେଇ କଲେ ବିଭୂଷିତ ॥
ରାଜାଙ୍କ କରୁଣା ହେଲା ଏ ଗ୍ରାମ ସ୍ଥାପିଲେ ।
କଜଳାଇ ପଲ୍ଲୀ ନାମେ ନାମିତ କରିଲେ ॥
ଦକ୍ଷିଣରେ ରତ୍ନମାଳା ପର୍ବତ ଶିଖର ।
ତହିଁରୁ ଜନମ ନେଇ ବହେ ନାଗଝର ॥
ଉତ୍ତରେ ଚାଷପଯୋଗୀ ବିସ୍ତୀର୍ଣ୍ଣ ପ୍ରାନ୍ତର ।
ଶସ୍ୟ ଶ୍ୟାମଳରେ ଭରି ଯୋଗାଏ ଆହାର ॥
ପ୍ରଭୁ ଲୋକନାଥ ଦେବ ପୂର୍ବଦିଗେ ବିଜେ ।
ପଶ୍ଚିମରେ ଠାକୁରାଣୀ ଅପରୂପ ସାଜେ ॥

ଦେବୀ ପାର୍ବତୀପତିଙ୍କ ଶୁଭଦୃଷ୍ଟି ପାଇ ।
ସଦା ସୁଖୀ ଗ୍ରାମବାସୀ ମନେ ଖେଦ ନାହିଁ ॥
ପୁଣ୍ୟ ସେଇ ଜନ୍ମମାଟି ଧନ୍ୟ ସେଇ ମାତା ।
ଯା କୋଳ ମଣ୍ଡନ କଲେ କେତେ ଦାତା ନେତା ॥
କେତେ ସୁନାମ ତାହାର କେତେ ବିଜ୍ଞ ଲୋକ ।
ଜନମିଲେ ସେ ମାଟିରେ ରଖିଲେ ତା ଟେକ ॥
ଜ୍ଞାନୀ ଗୁଣୀ ଭାଗ୍ୟବନ୍ତ କର୍ମଠ ଉଦ୍ୟୋଗୀ ।
ନାହିଁ ଈର୍ଷା ନାହିଁ ମେଳି ସବୁ ସହଭାଗୀ ॥
ଅନାମଧେୟ ଏ କଜଳାଇପଲ୍ଲୀ ଗାଆଁ ।
ଲୋକଲୋଚନରୁ ଦୂର ନଜାଣନ୍ତି ନାଆଁ ॥
ଗାଁଆଁ ନାଆଁ ଶୁଣି ଯିଏ ଟେକୁଥିଲା ନାକ ।
ଗାଇବୁଲୁଛନ୍ତି ଏବେ ସେ ମାଟିର ଟେକ ॥

●●●

**"ମୋ ଗାଁ ମୋ ସ୍ମୃତିର ସଫଳ ରୂପାୟନକୁ ସେଇ ମହାନ୍ ଆତ୍ମାମାନଙ୍କ ଚରଣ କମଳରେ ଉତ୍ସର୍ଗ କରୁଅଛି"**



# କୃତଜ୍ଞତା

ଗାଁର ସ୍ମୃତିକୁ ସାଉଁଟି ଆଣି ଲିପିବଦ୍ଧ କରିବା କାମ କେବଳ ମୋର ପ୍ରୟାସର ରୂପାୟନ ନୁହେଁ । ଏହା ସମସ୍ତ ଗ୍ରାମବାସୀଙ୍କର ଇଚ୍ଛା, ସହଯୋଗ ଓ ସ୍ମୃତିଚାରଣର ପ୍ରତିଫଳନ। ମୁଁ କେବଳ କଲମ ମୁନରେ ତୋଳି ଧରିବାକୁ ଉଦ୍ୟମ କଲି । ତେବେ, ଏ ପ୍ରୟାସରେ ଯେଉଁ ସାଙ୍ଗମାନେ ନିଜର ବହୁମୂଲ୍ୟ ସମୟ ବିନିଯୋଗ କରିଛନ୍ତି ସେମାନଙ୍କ ମଧ୍ୟରେ ପ୍ରଫୁଲ୍ଲ ଭାଇନା, ଚନ୍ଦ୍ର ଭାଇନା, କିଶୋର ଓ ଗାନ୍ଧୀ (ଶରତ) ଅନ୍ୟତମ । ମୁଁ ସେମାନଙ୍କ ପ୍ରତି କୃତଜ୍ଞ ।

ମୋର ବାଲ୍ୟଗୁରୁ ଶ୍ରୀଯୁକ୍ତ ଦିବାକର ମିଶ୍ର ଆମକୁ ଅହରହ ପ୍ରେରଣା ଦେବା ସହ, କେତେକ ଘଟଣାର ସୂଚି ଦେଇ ଏ ପ୍ରୟାସକୁ ସାଫଲ୍ୟମଣ୍ଡିତ କରିଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞତା ଜଣାଉଅଛି ।

ପରିଶେଷରେ, ମୋର ଗୁରୁ ପ୍ରଫେସର ୰ରାଜକିଶୋର ମିଶ୍ର, ପ୍ରାକ୍ତନ ସଚିବ, ଓଡିଶା ସାହିତ୍ୟ ଏକାଡେମୀ, ଯେକି ମୋତେ ଲେଖାଲେଖି କରିବା ପାଇଁ ସର୍ବଦା ଉତ୍ସାହିତ କରିଆସୁଥିଲେ, ତାଙ୍କ ନିକଟରେ ମୁଁ ଚିର ଋଣୀ । ପ୍ରଫେସର ମିଶ୍ର ସାହିତ୍ୟ ଜଗତର ଜଣେ କିମ୍ବଦନ୍ତୀ ପୁରୁଷ, ଏକଥା ଯଦିଓ ମୁଁ ପୂର୍ବରୁ ଅବଗତ ଥିଲି, କିନ୍ତୁ ତାଙ୍କ ସଂସ୍ପର୍ଶରେ ଆସିବାକୁ ସୁଯୋଗ ମିଳି ନ ଥିଲା । ଏକ ସଂଯୋଗକ୍ରମେ, ମୋ ପ୍ରଥମ ଲେଖାର ପାଣ୍ଡୁଲିପିକୁ ତାଙ୍କୁ ଦେଖାଇବା ଅବସରରେ, ସେ ତାଙ୍କ ବହୁମୂଲ୍ୟ ସମୟ ଦେଇ ଲେଖାଟିକୁ ପଢିବା ସହ ତାଙ୍କର ମତାମତରେ ମୋତେ ଆଗକୁ ବଢିବା ପାଇଁ ପ୍ରେରଣା ଓ ମାର୍ଗଦର୍ଶନ ଦେଲେ, ସେଥିପାଇଁ ମୁଁ ଚିରକୃତଜ୍ଞ ।

ଏଇ "ମୋ ଗାଁ ମୋ ସ୍ମୃତି" ଲେଖାଟିକୁ ମଧ୍ୟ ତାଙ୍କର ବହୁମୂଲ୍ୟ ସମୟ ଦେଇ ପଢ଼ିବା ସହ ଯେଉଁ କେଇଧାଡ଼ି ମନ୍ତବ୍ୟ ଲେଖିଲେ, ତାହା ପଢ଼ି ମୁଁ ଖୁବ୍ ଉତ୍ସାହିତ ହେଲି । ତାଙ୍କ ଉପଦେଶ ଅନୁଯାୟୀ ଅଧିକ ତଥ୍ୟ ମଧ୍ୟ ସଂଗ୍ରହ କଲି । କିନ୍ତୁ ଦୁର୍ଭାଗ୍ୟର କଥା, ମୋର ବହିର ମତାମତ ଲେଖିବା ପୂର୍ବରୁ ସେ ଧରା ଛାଡ଼ି ଚାଲିଗଲେ । ମୁଁ ମୋର ଅନ୍ତରର ଗଭୀରତମ ପ୍ରଦେଶରୁ ସେ ପବିତ୍ର ଆତ୍ମାପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ସହ ସଦ୍‌ଗତି ପାଇଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛି ।

[illegible]



# ଭୂମିକା

ଏମିତି ଦେଖିଲେ, କେତେଗୁଡ଼ିଏ ପରିବାର ଏକତ୍ର ବାସକଲେ ଗୋଟିଏ ଗାଁ ଆପେ ଆପେ ଗଢ଼ିଉଠେ । କିନ୍ତୁ ବାସସ୍ଥାନ ଯେଉଁଠି ହେଉ ନା କାହିଁକି, ସୁଖ ଓ ଶାନ୍ତି ନ ମିଳିଲେ ଗାଁ ବସାଇବାରେ କିଛି ସାର୍ଥକତା ନ ଥାଏ । ଉତ୍ତମ ପରିବେଶ, ପର୍ଯ୍ୟାପ୍ତ ଭିତ୍ତିଭୂମି, ଅଧିବାସୀମାନଙ୍କର ଆଚାର ବ୍ୟବହାର ହିଁ ସୁଖ ଓ ଶାନ୍ତିଜୀବନ ବିତାଇବାର ଚାବିକାଠି । ଲୋକମାନଙ୍କର ଆଚାର, ବିଚାର, ବ୍ୟବହାର, ତ୍ୟାଗ, ରୀତି ଓ ନୀତି ହିଁ ଗାଁର ସର୍ବାଙ୍ଗୀନ ଉନ୍ନତି ପାଇଁ ଦାୟୀ ।

ପରସ୍ପର ମଧ୍ୟରେ ସୌହାର୍ଦ୍ଦ୍ୟ ବଜାୟ ରହିଲେ ଯାଇ ଗାଁର ଲୋକମାନେ ସୁଖ ଓ ଶାନ୍ତିରେ ଜୀବନ ବିତାଇପାରିବେ । ଅଧିବାସୀଙ୍କର ବାର୍ତ୍ତାଳାପ (ମିଷ୍ଟଭାଷା), ତ୍ୟାଗ ମନୋଭାବ, ପରହିତଚିନ୍ତା ଓ ଦେଶପ୍ରେମ ଭାବ ଇତ୍ୟାଦି, ଆଦର୍ଶ ଗାଁର ମୁଖ୍ୟ ଉପାଦାନ । କାରଣ ତାହା ଉନ୍ନତିର ସଫଳ ରୂପାୟନ ପରିକଳ୍ପନା କରିବାରେ ସାହାଯ୍ୟ କରିଥାଏ । ସର୍ବୋପରି. ପ୍ରଚଳିତ ବଳିଷ୍ଠ ସଂସ୍କୃତି ଓ ଉତ୍ତମ କାର୍ଯ୍ୟଶୈଳୀ ଅଞ୍ଚଳବାସୀଙ୍କୁ ପ୍ରେରଣା ଯୋଗାଇବାସହ ଆଗାମୀ ପିଢ଼ିପାଇଁ ଆଦର୍ଶ ହୋଇ ରହିଯାଏ । ସେସବୁକୁ ଅନୁଧ୍ୟାନ କଲେ, ଆମ ପୂର୍ବପିଢ଼ିମାନେ ଏ ବଣପାହାଡଘେରା ଶୁଷ୍କଭୂମିରେ ଗାଁ ବସାଇ ଯେଉଁ ସ୍ୱପ୍ନ ଦେଖିଥିଲେ, ତାହା ନିଶ୍ଚିତ ରୂପେ ସାକାର ହେଇଚି କହିଲେ ଅତ୍ୟୁକ୍ତି ହେବନାହିଁ ।

"ଜନବସତି ବଢ଼ିଲେ ଗାଆଁଟିଏ ହୁଏ ।
ଆଚାର ବିଚାର ନେଇ ଆଦର୍ଶ ବୋଲାଏ ।।"

# ମୁଖବନ୍ଧ

ଜନ୍ମମାଟିକୁ କିଏ କଣ ଭୁଲିପାରେ ? ଗାଆଁଟିଏ ମାନେ ବହୁ ବିଶିଷ୍ଟ ବ୍ୟକ୍ତିଙ୍କର ଆବିର୍ଭାବ, ଅନେକ ସୁଗୁଣସମ୍ପନ୍ନ ବ୍ୟକ୍ତି ବିଷୟରେ ଚର୍ଚ୍ଚା, କିଛି ସ୍ୱତନ୍ତ୍ରତା, ଅନେକ ଘଟଣା, ଇତ୍ୟାଦି ଇତ୍ୟାଦି । ଭଲ, ମନ୍ଦ ଓ ତା ଭିତରେ କିଛି ଅଘଟଣ । ଏ ସବୁ ତ ସହଜାତ । ତେବେ ସବୁ ଅନୁଭୂତି ଭିତରେ ପିଲାଦିନର ଖେଳକୁଦ, ଛାତ୍ରଜୀବନର ପାଠପଢା ସହ କେତେକ କୌତୂହଳପୂର୍ଣ୍ଣ ଓ ଅନୁଶୋଚନାପୂର୍ଣ୍ଣ ଘଟଣାବଳୀ ବେଳେ ବେଳେ ଆପେଆପେ ଆଖିଆଗରେ ଭାସିଉଠିବା ସ୍ୱାଭାବିକ । ଘଟଣାଗୁଡିକ ଯେତେ ଜରୁରୀ କିମ୍ବା ମର୍ମସ୍ପର୍ଶୀ ହେଉନା କାହିଁକି, ଶିଶୁ ଅବସ୍ଥାର ଅଜ୍ଞତା, ଛାତ୍ରଜୀବନର ତାଡନା, ଓ ଯୁବା ବୟସର ପରିବାର ବୋଝ ମୁଣ୍ଡାଇ ଆଗକୁ ପାଦ ବଢାଇବା ଭିତରେ ସେ ସବୁ ଉପରୁ ଧ୍ୟାନ ଆପେ ଆପେ ହଟିଯିବା ସ୍ୱାଭାବିକ । କିନ୍ତୁ ପରିଣତବୟସରେ ପଦାର୍ପଣ କରିବାପରେ, ଜୀବନର ସେଇ ଲମ୍ବା ଅବଧିର ସମସ୍ତ ଘଟଣାବଳିଗୁଡିକ ବହୁତ ମନେପଡେ । ଆଉ ଯେତେବେଳେ ଗାଁ କଥା, ସାଙ୍ଗ ମାନଙ୍କ କଥା ମନେପଡେ, ଜନ୍ମମାଟି ପ୍ରତି କେମିତି ଏକ ଅହେତୁକ ଆକର୍ଷଣ ଆପେ ଆପେ ଆସିଯାଏ ।

ଏଇ ପରିପ୍ରେକ୍ଷିରେ. ସଂଯୋଗ କ୍ରମେ, ଆମେ କେତେଜଣ ସମବୟସ୍କ ଗ୍ରାମବାସୀ ଥରେ ନାଗଝରନଦୀର ଶିମିଳିଝରଠାରେ ଏକ ବଣଭୋଜିର ଆୟୋଜନ କରିଥିଲୁ । ସେଇ ଅବସରରେ, ଆମେ ଯେତେବେଳେ ପିଲାଦିନର ଅନୁଭୂତି, ଗାଁର ସ୍ୱତନ୍ତ୍ରଗୁଣଧାରୀ ବ୍ୟକ୍ତିବିଶେଷ ବିଷୟରେ ସ୍ମୃତିଚାରଣ କଲୁ, କେତେକ ରୋଚକ ଘଟଣାର ଛବିସବୁ ଆଖିଆଗରେ ଝଲସିଉଠିଲା । ସେସବୁ ଆଲୋଚନା କରି ଭରପୂର ମଜା ବି ଉଠାଇଲୁ । ତାପରେ ଯେବେବି ଆମେ ଏକାଠି ହେଲୁ ସେ ଛବି ଆଖି

ଆଗରେ ଉଦ୍‌ବେଳିତ ହେବା ସହ ମନରେ ଅପ୍ରମିତ ଖୁସି ଆଣିବା ସହ ଗର୍ବ ଲାଗିଲା ଯେ ଆମେ ଏକ ପୁଣ୍ୟଭୁମିଁରେ ଜନ୍ମନେଇଛୁ । ଅବଶ୍ୟ ଦୁଃଖବି ଲାଗିଲା କାରଣ, ଦେଖାଗଲା ଯେ, କେତେକ ମହାନ ଆତ୍ମାଙ୍କ ଦାନ ଧିରଧିରେ ସ୍ମୃତି ପଟଳରୁ ବିସ୍ମୃତ ହୋଇଯାଉଚି । ତେଣୁ ସେ ସମ୍ପର୍କରେ ଏକ ପ୍ରସ୍ତାବ ଗୃହୀତ ହେଲାଯେ, ଆମେ ଆମ ଗାଁର ଖ୍ୟାତି, କୃତିପୂର୍ଣ୍ଣ ଓ ରୁଚିପୂର୍ଣ୍ଣ ଘଟଣାବଳୀକୁ ସାଉଁଟିଆଣି ସଂରକ୍ଷଣ କରିବାର ଏକ ପ୍ରୟାସ ଜାରି ରଖିବା । ସେଇ ପରିପେକ୍ଷିରେ କିଛି ଐତିହ୍ୟପୂର୍ଣ୍ଣ ତଥ୍ୟକୁ ଲେଖାଆକାରରେ ପ୍ରକାଶ କରିବା କାର୍ଯ୍ୟ ଏବେ ସମ୍ପୂର୍ଣ୍ଣ ହେଲା । ଆଶା କରୁ, ତାହା ପରପିଢିପ୍ରତି ମାର୍ଗଦର୍ଶକ ହେବ ।



# ଉପକ୍ରମ

କାହିଁକି କେଜାଣି ଆଜି ଗାଁ କଥା ବେଶି ମନେ ପଡିଲା । ପିଲାଦିନ କଥା, ସାଙ୍ଗମାନଙ୍କ କଥା, ଗାଁର ପରିବେଶ, ଆମ ଚଳଣି, ସଂସ୍କୃତି, ଐତିହ୍ୟ, ଇତ୍ୟାଦି ଇତ୍ୟାଦି । ଗାଁଟି ସିନା ଛୋଟ, ଅନାମଧେୟ ଓ ଲୋକଲୋଚନଠାରୁ ବହୁ ଦୂରରେ, କିନ୍ତୁ ଏହାର ବଳିଷ୍ଠ ସଂସ୍କୃତି ଓ ଲୋକମାନଙ୍କର ଆଦର୍ଶବାଦ ସମୟର ସ୍ରୋତରେ ଧୀରେ ଧୀରେ ସ୍ମୃତିଗର୍ଭରୁ କାଳେ ବିସ୍ମୃତ ହୋଇଯିବ, ସେଇ ଆଶଙ୍କାରେ ଭାବିଲି ସେ ବଳିଷ୍ଠ ବ୍ୟକ୍ତିତ୍ୱ ଓ ସଂସ୍କୃତିକୁ ଯଦି କଲମ ମୁନରେ ଧରି ରଖିହୁଅନ୍ତା, ତେବେ ଆସନ୍ତା ପିଢିପ୍ରତି ତାର କିଛି ପ୍ରଭାବ ପଡନ୍ତା । ସେଇ ଅଭିପ୍ରାୟ ନେଇ ମୁଁ ଗାଁର କେତେକ ବୟୋଜ୍ୟେଷ୍ଠ ବ୍ୟକ୍ତିଙ୍କ ସହ ଆଲୋଚନା କରିବା ପରେ ସେମାନଙ୍କଠାରୁ ପ୍ରଭୂତ ଉତ୍ସାହ ଓ ପ୍ରେରଣା ପାଇ କିଛି ତଥ୍ୟ ଉପସ୍ଥାପନା କରିବା ପ୍ରୟାସ ଜାରି ରଖିଲି ।

ଆମ ଏଇ ଗାଁଟି ତତ୍‌କାଳୀନ ରାଜୁଡା ଶାସିତ ନୟାଗଡ ରାଜ୍ୟର କାନ୍ଥମାଳ ପ୍ରଗଣାସ୍ଥ ଶରଣକୂଳ ଥାନା ଅନ୍ତର୍ଭୁକ୍ତ । କେଉଁ କାଳରୁ ବା କେଉଁ ମସିହାରୁ ଏ ଗାଁ ସ୍ଥାପନା ହେଲା, ସେ ତଥ୍ୟ ମିଳିବା ଯଦିଓ ସମ୍ଭବ ନୁହେଁ, ତେବେ ଶୁଣିବାକୁ ମିଳେ, ନୟାଗଡ ଗଡଜାତ ରାଜ୍ୟର ରାଜା ବିନାୟକ ସିଂଙ୍କ ରାଜତ୍ୱ କାଳରେ (୧୭୯୩-୧୮୨୩ମସିହା) ଏଇ କଜଳାଇପଲ୍ଲୀ (କୃଷ୍ଣଶରଣପୁର ଶାସନ) ଗାଁଟି ବର୍ତ୍ତମାନର ଉଚ୍ଚ ଇଂରାଜୀ ବିଦ୍ୟାଳୟ ପରିସରସ୍ଥ ବୁଢିକଜଳେଇ ଠାକୁରାଣୀ ମନ୍ଦିର ନିକଟରେ ୰ଲୋକନାଥ ମିଶ୍ରଙ୍କ (ପଟ୍ଟଯୋଶୀ ବଂଶ) ଉଦ୍ୟମରେ ସ୍ଥାପନା କରାଯାଇଥିଲା । ସେ ହିଁ ଏ ଗ୍ରାମର ପ୍ରତିଷ୍ଠାତା । ସିଏ ନୟାଗଡ ରାଜାଙ୍କଦ୍ୱାରା ପଟ୍ଟଯୋଶୀ ପଦରେ ଅଭିସିକ୍ତ ହୋଇଥିଲେ ।

ଘଟଣାକ୍ରମରେ, ଗାଁଟି ଏଇ ସ୍ଥାନକୁ ସ୍ଥାନାନ୍ତର ହେଲା । ଏଇ ସ୍ଥାନାନ୍ତରର କାରଣ ହେଲା, ରାହାଜାନି ଓ ଚୋରମାନଙ୍କର ଦୌରାତ୍ମ୍ୟ । ରାଜୁଡ଼ା ଶାସନ କାଳରେ ଏ ଅଞ୍ଚଳ ଘନ ଜଂଗଲବେଷ୍ଟିତ ଥିବାରୁ ଚୋରମାନେ ବାଣପୁରରୁ ଜଂଗଲଦେଇ ଆସନ୍ତି ଓ ଏଠାରେ ଡେରା ପକାଇ ନାନା ଉପଦ୍ରବ କରନ୍ତି । ଗାଁଟି ସେତେବେଳେ ଅଳ୍ପ କେତେଘରକୁ ନେଇ ଏକ ଛୋଟ ବସତି ଥିଲା । ତେଣୁ ଚୋରଙ୍କ ସମ୍ମୁଖୀନ ହେବା ଗ୍ରାମବାସୀଙ୍କ ସାମର୍ଥ୍ୟ ନଥିଲା । ଚୋରଙ୍କ ଉତ୍ପାତରେ ଅତିଷ୍ଠହୋଇ ସେମାନେ ରାଜାଙ୍କ ନିକଟରେ ଗୁହାରି କରିବାରୁ ରାଜା ଉଚିତ୍ ପରାମର୍ଶ ଦେଇ କହିଲେ, ବଡକୁଟୁଣି ଗ୍ରାମରେ ବନ ସୁରକ୍ଷାପାଇଁ ସେନା ନିଯୁକ୍ତ ଅଛନ୍ତି, ସେ ଗ୍ରାମ ପାର୍ଶ୍ୱରେ ଥିବା ଜମି ତୁମମାନଙ୍କୁ ଦାନ ଆକାରରେ ପ୍ରଦାନ କରାଯିବ ଓ ବିପଦ ସମୟରେ ତୁମେମାନେ ବଡକୁଟୁଣୀ ସେନାର ସାହାଯ୍ୟ ନେଇପାରିବ। ତେଣୁ ତୁମେମାନେ ସେଠାକୁ ସ୍ଥାନାନ୍ତରିତ ହୋଇ ନିର୍ଭୟରେ ବସବାସ କର । ରାଜା ୧୨୦ବାଟି (୬୦୦ ଏକର) ଜମି ଦାନ ଆକାରରେ ବ୍ରାହ୍ମଣ ମାନଙ୍କୁ ପ୍ରଦାନ କଲେ ।

ଏପରିପ୍ରେକ୍ଷିରେ, ଯଦିଓ ସେ ସମୟର କେହି ବ୍ୟକ୍ତି ଏବେ ନାହାଁନ୍ତି କିମ୍ବା ଲିଖିତ ତଥ୍ୟ ଲବ୍ଧ ହୋଇପାରିନାହିଁ, ଆମର ମନେପଡୁଛି, ସ୍ୱାଧିନତା ପରେ, ନୟାଗଡ ରାଜା୵କୃଷ୍ଣଚନ୍ଦ୍ର ମାନଧାତା ରାଜ୍ୟ ବିଧାନସଭା ନିର୍ବାଚନପାଇଁ ପ୍ରର୍ଥୀରୂପେ ପ୍ରଚାର ଅଭିଯାନ କରିବା ଅବସରରେ ଆମ ଗାଁକୁ ଆସିଥିଲେ । ତାଙ୍କୁ ମଂଚାସୀନ କରିବା ପାଇଁ ଅନୁରୋଧ କରିବାରୁ ସିଏ ବିନୀତ ହୋଇ କହିଥିଲେ, ଏ ଗାଁକୁ ଆମ ପିତୃପୁରୁଷ ବ୍ରାହ୍ମଣମାନଙ୍କୁ ଦାନ ସୂତ୍ରରେ ପ୍ରଦାନ କରିଥିବାରୁ, ମୁଁ ଏଠାରେ ବସି ପାରିବି ନାହିଁ । ତାଙ୍କରି ସେଇ ଉକ୍ତିରୁ ଆମେ ଜାଣିଲୁ ଯେ, ରାଜାହିଁ ଆମ ଗାଁ ସ୍ଥାପନା କରିଥିଲେ ।

ଆମ ଗାଁର ପୂର୍ବ ଦିଗରେ ୧୦୦ ହାତ ଦୂରରେ ଅବସ୍ଥିତ ବଡକୁଟୁଣୀ ଗାଁ ଆମ ଗାଁ ଠାରୁ ଏକ ପୁରୁଣା ବସତି ଓ ସେଠାକାର ଅଧିକାଂଶ ଗ୍ରାମବାସୀ ଖଣ୍ଡାୟତ ଶ୍ରେଣୀର । ଆମ ଗାଁର ସମସ୍ତ ଅଧିବାସୀ ବ୍ରାହ୍ମଣ ପରିବାର ହେତୁ ଏହା ଏକ ଶାସନ ବସତି । ପୂଜାର୍ଚ୍ଚନାହିଁ ମୂଖ୍ୟ ଜୀବିକା । ତେବେ ପୂଜାର୍ଚ୍ଚନା ପାଇଁ ଶିବ ମନ୍ଦିର ନିହାତି ଦରକାର । ସମ୍ବଳର ଅଭାବ । ୵ଉତ୍ସବ ପାତ୍ର ହେଉଛନ୍ତି ବଡକୁଟୁଣିଗାଁର ଏକ ଧନୀ ବ୍ୟବସାୟୀ, କେବଳ ବଡକୁଟୁଣି ନୁହେଁ, ଆମ ଅଞ୍ଚଳର

ମଧ୍ୟ । ଆମଗାଁର ବ୍ରାହ୍ମଣ ସମାଜ ନୈଷ୍ଠିକ ଓ ବୈଦିକ ରୀତିରେ ପୂଜାର୍ଚ୍ଚନା କରୁଥିବାରୁ ପାତ୍ର ମହାଶୟ ସେମାନଙ୍କୁ ଉପଯୁକ୍ତ ସମ୍ମାନ ଦେଇଥାନ୍ତି । ସେଇ ପରିପ୍ରେକ୍ଷିରେ, ତାଙ୍କରି ଉଦ୍ୟମ ଓ ସହାୟତାରେ ଚାଳଘରେ ସ୍ଥାପିତ ଗାଁର ଶ୍ରୀଲୋକନାଥଦେବଙ୍କ ପାଇଁ ଏକ ମନ୍ଦିର ସ୍ଥାପନା ସମ୍ଭବ ହେଲା । ମନ୍ଦିର ପ୍ରତିଷ୍ଠା ଉତ୍ସବରେ ପାତ୍ର ମହାଶୟ ଗାଁ ବ୍ରାହ୍ମଣମାନଙ୍କୁ ନିମନ୍ତ୍ରଣ କଲେ କିନ୍ତୁ ପ୍ରତିଷ୍ଠା ଉତ୍ସବରେ ଯୋଗଦାନ ପାଇଁ ଯୋଡ ପାଇବାର ଯେଉଁ ସର୍ତ୍ତ ରହିଲା, ସେ କଥା ଆମ ଗାଁ ୰ଜଗନ୍ନାଥ ମିଶ୍ର ଯେକି ପାତ୍ରଙ୍କ ପୁଅକୁ ଟିଉସନ କରନ୍ତି, ତାଙ୍କ ମାଧ୍ୟମରେ ଉପସ୍ଥାପନା କରାଗଲା । (ସେଇ ପରିପ୍ରେକ୍ଷୀରେ ଏକ କୌତୂହଳପୂର୍ଣ୍ଣ ଘଟଣାର ସୂଚନା ମିଳେ; ଜଗନ୍ନାଥ ମିଶ୍ରଙ୍କ ପ୍ରସ୍ତାବକୁ ପାତ୍ର ମହାଶୟ ଯଦିଓ ଗ୍ରହଣ କରିନେଲେ, କିନ୍ତୁ ପୁଅର ଟିଉସନ ସେ ଦିନଠାରୁ ବନ୍ଦ କରିଦେଲେ) ।

ଆମ ଗାଁ ପରି ଗାଁ ନାହିଁ, ଆମ ଗାଁ ଲୋକଙ୍କ ପରି ଲୋକ ନାହାନ୍ତି । ଆମ ଗାଁର ଐତିହ୍ୟ ଓ ପରମ୍ପରା ବିଚାର କଲେ ବହୁ ସ୍ୱତନ୍ତ୍ରତା ଦେଖିବାକୁ ମିଳେ । ତେବେ ତା'ର ବିଶଦ ବିବରଣୀ ଆଲୋଚନାକ୍ରମେ ସ୍ଥାନିତ କରାଯିବ । କାଳେ ବାଦ ପଡିଯିବ, ପ୍ରଥମେ କେତେକ ସ୍ୱତନ୍ତ୍ର ଗୁଣଧାରୀ ଚରିତ୍ର, ଯେଉଁମାନେ ସମସ୍ତ ଗ୍ରାମବାସୀଙ୍କ ଆକର୍ଷଣର ବିନ୍ଦୁ ଥିଲେ, ସେମାନଙ୍କ ବିଷୟରେ ଆଲୋଚନା କରିବା । ଚିଂଚିମା, ମଲ୍ଲିକାମା, ପୁନାମା, ମୁଳିମା, ଲୋକାମା, ହାଡିମା ଇତ୍ୟାଦି କେତେକ ଆତ୍ମନିର୍ଭରଶୀଳ ମା ମାନଙ୍କର ଭୂମିକା ସର୍ବଦା ଚର୍ଚ୍ଚାଯୋଗ୍ୟ । ଆଉ କେତେଜଣ ବିଶିଷ୍ଟ ବ୍ୟକ୍ତିତ୍ୱ ଯାହାଙ୍କର ଇଚ୍ଛା, ସହଯୋଗ ଓ କାର୍ଯ୍ୟଶୈଳୀର ସ୍ୱତନ୍ତ୍ରତା ନେଇ ଏ ଗାଁ ଗର୍ବିତ, ସେମାନଙ୍କ ବିଷୟରେ ମଧ୍ୟ ଆଲୋକପାତ କରିବା ସମୀଚୀନ ହେବ । ସେମାନଙ୍କ ମଧ୍ୟରେ ବୈଦ୍ୟରାଜ ଜଗନ୍ନାଥ ରଥ, ଲିଙ୍ଗରାଜ ମିଶ୍ର, ହାଡୁବନ୍ଧୁ ମିଶ୍ର, ଆନନ୍ଦ ମିଶ୍ର (ମକଦମ), ରାମ ମାଷ୍ଟେ, ବୈଦ୍ୟନାଥ ଆଚାର୍ଯ୍ୟ, ରାମ କର (ପୋଷ୍ଟ ମାଷ୍ଟ୍ରେ), ବାଣୁଆସିଂ ଜେନା ବୁଢା, ଇତ୍ୟାଦି । ହଁ , ଗ୍ରାମର ପଶ୍ଚିମ ଦିଗ ଆମ୍ବ ତୋଟାରେ ଯେଉଁ ଅଜଣା ଅଚିହ୍ନା ଏକ ଗୋଷ୍ଠି କେଉଁ କାଳରୁ ବାସ କରି ଆସୁଥିଲେ ଏବଂ ସେମାନଙ୍କ ଜାତି, ବର୍ଣ୍ଣ ମୂଳ ବାସସ୍ଥାନ ନ ଜାଣି କେବଳ ମାଟି ଖୋଳା କାମରେ ନିୟୋଜିତ ହୁଅନ୍ତି ବୋଲି ତାଙ୍କୁ ଆମେ ମାଟିଆ କହୁଥାଉ, ସେମାନଙ୍କ ବିଷୟରେ ମଧ୍ୟ ସୂଚନା ଦେବା ଉଚିତ୍ ହେବ । କାରଣ ସେମାନେ ବଣରୁ ସଂଗ୍ରହ କରୁଥିବା କନ୍ଦା ଆମେମାନେ ଖାଦ୍ୟରୂପେ ବ୍ୟବହାର କରୁଥିଲୁ ଓ ଖଜୁରି ପତ୍ରରେ

ତିଆରି କରୁଥିବା ପଟି ଦୈନନ୍ଦି କାର୍ଯ୍ୟରେ ଲଗାଉଥିଲୁ । ସେମାନଙ୍କ ଭାଷା ଆମେ ଯଦିଓ ବୁଝିପାରୁ ନଥିଲୁ, ଯୋଗାଯୋଗରେ ବିଶେଷ ଅସୁବଧା ହେଉ ନଥିଲା ।

ମୁଁ ଯେତେବେଳେ ନିମ୍ନ ପ୍ରାଥମିକ ବିଦ୍ୟାଳୟକୁ ଯିବାକୁ ଆରମ୍ଭ କଲି, ଗାଁ ବିଷୟରେ କିଛି ଜାଣିବା ପୂର୍ବରୁ ଅନୁଭବ କଲି ଯେ, ଏଇ ଉପର ବର୍ଣ୍ଣିତ ବ୍ୟକ୍ତି ବିଶେଷଙ୍କ ଆଲୋଚନା ପ୍ରାୟ ସଭିଙ୍କ ମୁହଁରୁ ଶୁଣିବାକୁ ମିଳୁଛି । ତେଣୁ ସେମାନଙ୍କର ଭୂମିକା କଣ, ଜାଣିବାକୁ ଉତ୍କଣ୍ଠା ବଢ଼ିବା ସ୍ୱାଭାବିକ । ଏବେ ଯେତେବେଳେ ଗାଁ ବିଷୟରେ କିଛି ଲେଖିବାକୁ ଆଗ୍ରହୀ ହୋଇଚି, ଯେଉଁ ସବୁ ତଥ୍ୟ ଧୀରେ ଧୀରେ ଝାପ୍‌ସା ହେଇଯାଉଚି, କାଳେ ଭୁଲିଯିବି, ପ୍ରଥମେ ସେସବୁକୁ ଲିପିବଦ୍ଧ କରିବା ଉଚିତ ହେବ ।

କଜଳାଇପଲ୍ଲୀ ଶାସନ କେବେ ସ୍ଥାପନା ହୋଇଥିଲା, ତାର ବିଶଦ୍ ବିବରଣୀ ଉପସ୍ଥାପନା କରିବା ପାଇଁ ମୁଁ ଯେତେବେଳେ କଲମ ଧରିଲି, ଭିକାରୀପଡା ଗ୍ରାମର ଶ୍ରୀ ତୋଷବନ୍ତ କର ଶର୍ମାଙ୍କ (ଧୋବେଇ କର) ସହ ମୋର ସାକ୍ଷାତ ହେଲା । ତାଙ୍କ କହିବା ଅନୁଯାୟୀ, କଜଳାଇପଲ୍ଲୀ ଗ୍ରାମ ସ୍ଥାପନା ନୟାଗଡ ଲୋକନାଥ ପଟ୍ଟଯୋଶୀଙ୍କ ଉଦ୍ୟମରେ ହେବା ବିଷୟ ସମସ୍ତେ ଜାଣନ୍ତି । କିନ୍ତୁ ତାର ବହୁ ପୂର୍ବରୁ ତାଙ୍କ ପୂର୍ବ ପୁରୁଷ ସେଠାରେ ସ୍ୱଳ୍ପ ସମୟପାଇଁ ବସବାସ କରିଥିଲେ ।

ତାଙ୍କର ଜନୈକ ପୂର୍ବ ପୁରୁଷ ୰ଯଜ୍ଞ କର ଓ ତାଙ୍କ ଲଗ୍ନିକ ଦୁଇ ଭାଇ ବେଦ ପଠନ ଓ ତର୍ଜମାରେ ପଟୁତା ଅର୍ଜନ କରି ବିଭିନ୍ନ ରାଜ୍ୟକୁ ଯାଇ ବେଦ ଚର୍ଚ୍ଚା କରୁଥିଲେ । ଏକଦା ସେ ତିନିଜଣ ନୟାଗଡ ଆସି କୌଣସି ଏକ ପବିତ୍ର ସ୍ଥାନରେ ବେଦ ପଠନ କରୁଥିବା ସମୟରେ ସେମାନଙ୍କର ନିଷ୍ଠା ଓ ଭକ୍ତିପୂର୍ଣ୍ଣ ଅଧ୍ୟୟନରେ ନିକଟସ୍ଥ ଏକ ଶୁଷ୍କ ତେନ୍ତୁଳିବୃକ୍ଷ ହଠାତ୍ ଉଜ୍ଜିବିତ ହୋଇଉଠିଲା । ଉପସ୍ଥିତ ସମସ୍ତ ଶ୍ରୋତାବୃନ୍ଦ ସ୍ତମ୍ଭୀଭୁତ ହୋଇଗଲେ । କଥା ରାଜାଙ୍କ କାନରେ ପଡିବାରୁ ସେ ପଣ୍ଡିତ ତ୍ରୟଙ୍କୁ ଡକାଇଲେ ଓ ସେମାନଙ୍କୁ ସମ୍ମାନର ସହ ଆତିଥ୍ୟ ଦେଲେ ଓ ରାଜାଙ୍କ ପ୍ରସ୍ତାବ ଅନୁଯାୟୀ, ସେମାନେ ବୁଢ଼ିକଜଳେଇ ଠାକୁରାଣୀଙ୍କ ନିକଟରେ ଯାଗା ଚିହ୍ନଟ କରି ବାସ କଲେ । ସେ ସମୟରେ ସେ ଅଞ୍ଚଳ ଘନ ଜଙ୍ଗଲ ବେଷ୍ଟିତ ଥିଲା । ତଥାପି ରାଜାଙ୍କ ପ୍ରସ୍ତାବକୁ ଗ୍ରହଣ କରି ସେଠାରେ ଯଦିଓ ସେମାନେ ବସବାସ କରି ରହିଲେ, ପୂଜାପାଠ କରିବାପାଇଁ, ନଦୀନାଳ ପାରହୋଇ ଶରଣକୁଳ (ଲଡୁବାବା ମନ୍ଦିର) ଯିବା ଆସିବା କରିବାରେ ବହୁ ଅସୁବିଧାର ସମ୍ମୁଖୀନ ହେଲେ ।

ତେଣୁ ରାଜାଙ୍କୁ ଦୁଃଖ ଜଣାଇବା ପରେ ରାଜା ସେମାନଙ୍କ ପାଇଁ ଓଡଗାଁ ନିକଟସ୍ଥ ବାଉଁଶଗାଡିଆରେ ରହିବା ବ୍ୟବସ୍ଥା କରିଦେଲେ । ପରେ ଅବଶ୍ୟ ଅନ୍ୟ ଏକ ଘଟଣା କ୍ରମରେ, ସେ ବଂଶ ଭିକାରିପଡା ସ୍ଥାନାନ୍ତର ହେଲେ । ପରବର୍ତ୍ତୀ ସମୟରେ ଲୋକନାଥ ପଟ୍ଟଯୋଶୀଙ୍କ ଉଦ୍ୟମରେ ପୁନଶ୍ଚ କଜଳାଇପଲ୍ଲୀ ଶାସନର ଅଭ୍ୟୁଦୟ ହେଲା ।

ସେ ସମୟର କଜଳାଇପଲ୍ଲୀ ଶାସନ ଲୋକଲୋଚନରୁ ବହୁ ଦୂରରେ ଥିଲା, ଏଥିରେ କାହାର ବି ଦ୍ୱିମତ ନଥିଲା । ଏ ଗାଁର ପରିଚୟ ଦେବାକୁ ହେଲେ ଆମ ଗାଁ ଲୋକଙ୍କୁ ଶରଣକୁଳର ସାହାରା ନେବାକୁ ହେଉଥିଲା । ଶରଣକୁଳ ହିଁ ଆମ ପରିଚୟର ପ୍ରଥମ ସୋପାନ । ଗାଁଟି ଶରଣକୁଳ ଥାନା, ନୟାଗଡ ଗଡଜାତ ବା ସ୍ୱାଧୀନତା ପରର ନୟାଗଡ ଉପଖଣ୍ଡ (ବର୍ତ୍ତମାନ ଜିଲ୍ଲା) ଅନ୍ତର୍ଭୁକ୍ତ। ଏ ପରିପ୍ରେକ୍ଷୀରେ ଶରଣକୁଳ ବିଶେଷକରି ପ୍ରଖ୍ୟାତ ଶୈବପୀଠ ଲଡୁବାବା ଓ ନୟାଗଡ ରାଜାଙ୍କ ବିଷୟରେ ସମ୍ୟକ ବିବରଣୀ ଉପସ୍ଥାପନା ନକଲେ, ଲେଖା ଅସମ୍ପୂର୍ଣ୍ଣ ମନେହେବ ।



# ମୋ ଗାଁ

ଗାଆଁ ଟିର ନାମ କଳଲାଇପଲ୍ଲୀ
ନୁହେଁ ସୁଦୂର ପ୍ରସାରୀ ।
କିନ୍ତୁ ସେଗାଁ ଲୋକେ ବଡ ଭାଗ୍ୟବନ୍ତ
ସବୁଠି ହେଲେ ପ୍ରଭାରୀ ।।

ବଣ ପାହାଡରେ ଘେରା ଏ ଅଞ୍ଚଳ
ଲୋକଲୋଚନରୁ ଦୂର ।
ବାଘ ଭାଲୁ ସଙ୍ଗେ ଭେଟହୁଏ ନିତି
ସଦା ତାଙ୍କ ପ୍ରତି ଡର ।।

ଗାଁ ର ଐତିହ୍ୟ ବହୁ ପୁରାତନ
ପୂର୍ବ ପିଢିଙ୍କର ଖ୍ୟାତି ।
କାଳଗର୍ଭେ ଭସ୍ମ ହେଲାଣି ସେସବୁ
ନାହିଁ ଲେଖା ନାହିଁ ପୋଥି ।।

କେତେ ରଥୀ ଚାଲି ଗଲେଣି କେବେଠୁ
ସବୁ କଥା ମନେ ନାହିଁ ।
ସେଇ ଏକା ରଥୀ ସଭିଙ୍କ ମନରେ
ରହିଛନ୍ତି ଛାପିହୋଇ ।।

କାଳଜୟୀ ସିଏ ଜନ୍ମ ନେଲେ ଆସି
ଏଦୁର୍ଗମ ପଲ୍ଲୀ ଗ୍ରାମେ ।
ଅଞ୍ଚଳର ଦୁଃଖ ହରଣ କରିବେ
ଲେଖାଥିଲା ଆମ କର୍ମେ ॥
ଅଦମ୍ୟ ସାହସ ଅତୁଟ ବିଶ୍ୱାସ
ପରୋପକାରୀ ମଣିଷ ।
ଜଳ ହିଁ ଜୀବନ ଶିକ୍ଷା ମାନଦଣ୍ଡ
ତାଙ୍କର ଥିଲା ବିଶ୍ୱାସ ॥

ତାଙ୍କ ନ୍ୟାୟ ଧର୍ମ ସୃଜନଶୀଳତା
ସଭିଙ୍କର ମନ କିଣେ ।
କର୍ମ କୁଶଳତା ଭାଷା ଚତୁରତା
ବିମୋହିତ କରି ଜାଣେ ॥

ସବୁରି ମୂଳରେ ଏକଇ ଆଦର୍ଶ
ପ୍ରେରଣାର ଉତ୍ସ ଭରା ।
ସେ ମହା ମାନବ ଆଉକେହି ନୁହେଁ
ଲିଙ୍ଗରାଜ ମିଶ୍ର ପରା ॥

ତାଙ୍କରି ସ୍ୱପ୍ନରେ ଅଙ୍କା ଯାଇଥିଲା
ଏ ପଲ୍ଲୀ ଗ୍ରାମର ନକ୍ସା ।
ଅନ୍ୟଥା ଉଜ୍ଜ୍ୱଳ ସୋପାନ ଚଢିବା
ହୋଇଥାନ୍ତା ସ୍ୱପ୍ନ ଇଚ୍ଛା ॥

ଏମନ୍ତ ମହାତ୍ମା ଜନ୍ମ ନେଲେ ଗ୍ରାମେ
ଇତିହାସ ରଚିଗଲେ ।
ପିଲା ଠାରୁ ବୁଢା ସଭିଙ୍କର ପ୍ରିୟ
ଅମର ହୋଇ ରହିଲେ ॥

ଚାଷ ପାଇଁ ପାଣି ଯୋଗାଇଲେ ବାନ୍ଧି
ନାଗଝର ଆନିକଟ ।
ମରୁଡି ସୁରକ୍ଷା ପାଇଁ ଚାଷୀକୁଳ
ମନେ ଆସିଲା ଉଚ୍ଚାଟ ॥

ଶିକ୍ଷାର ପ୍ରସାର କରିବା ଲକ୍ଷ୍ୟରେ
ହେଲା ଉଚ୍ଚ ବିଦ୍ୟାଳୟ ।
ନ୍ୟାୟ ଦେବାପାଇଁ ପ୍ରତିଷ୍ଠା କରିଲେ
ପଞ୍ଚାୟତ କାର୍ଯ୍ୟାଳୟ ॥

ଅକାଳ ବିୟୋଗ ହୋଇଲା ତାଙ୍କର
ସ୍ୱପ୍ନ ରହିଲା ଅଧୁରା ।
ଶୋକ ସାଗରରେ ଭସାଇ ସଭିଙ୍କୁ
ଛାଡିଚାଲିଗଲେ ଧରା ॥

ଏତିକି ମିନତି ପବିତ୍ର ଆତ୍ମାକୁ
ଈଶ୍ୱରଙ୍କ ପାଶେ ଥାଇ ।
ଆଶୀର୍ବାଦ ଭରା ଶୁଭଦୃଷ୍ଟି ପଡୁ
ଏଗାଁର ଟେକ ପାଇଁ ॥



# ଜୀବନରେଖା

ପୁରାଣରେ ଲେଖା ନାହିଁ । ଭୂଗୋଳ ପୋଥିରେ ନାହିଁ ।।
ଲୋକଲୋଚନରୁ ଦୂର । ନଦୀନାମ ନାଗଝର ।।
ସ୍ୱଚ୍ଛ ଯେ ଶୀତଳ ଜଳ । ଅନୁପମ ଶୋଭା ତାର ।।
କଳକଳ ନାଦ ଦେଇ । ନିଘଞ୍ଚ ବନେ ବହଇ ।।
ରତ୍ନମାଳା ବୁକୁ ଚିରି । ଶୃଙ୍ଗ ଓ ପାଦକୁ ଯୋଡି ।।
ନାଗପରି କ୍ଷିପ୍ର ସ୍ରୋତ । ଅଙ୍କାବଙ୍କା ଗତିପଥ ।।
କେଉଁଠି ନତମସ୍ତକ । ଜଳଧାରା ଧୀରଶାନ୍ତ ।।
କେଉଁଠି ଫୁଲେଇରାଣୀ । ଫଣାଟେକି ଛାଟେ ପାଣି ।।
ତା' ଚଳଚଞ୍ଚଳ ଗତି । ମନେ ତାର ନାହିଁ ଭ୍ରାନ୍ତି ।।
ଲାଗୁଛି ଧାଏଁ ତଳକୁ । ସାଗରରେ ମିଶିବାକୁ ।।
ଗଙ୍ଗା ଓ ଯମୁନା ସିନ୍ଧୁ । ଗୋଦାବରୀ ସରସ୍ୱତୀ ।।
ନର୍ମଦା କାବେରୀ ଜଳ । ପୂଜାପାଇଁ ହିଏ ଠୁଳ ।।
ସ୍ୱଚ୍ଛ ଶୁଦ୍ଧ ନାଗଝର । ପଞ୍ଚତୀର୍ଥ ସେ ଆମର ।।
ତା' ଜଳ ଗଙ୍ଗା ଯମୁନା । ପୂଜା ନିଷ୍ଫଳ ତା ବିନା ।।
କି ବର୍ଣ୍ଣିବି ଗୁଣ ତା'ର । ଆମ ଜୀବନ ଆଧାର ।।
ସଭିଙ୍କ ମୁଖରେ ଦାନା । ନାଗଝର ଦିଏ ସିନା ।।



# କଜଳେଇଠାକୁରାଣୀ

ଜୟମାତ କଜଳେଇ ଜୟମା ଶିବାନୀ,
ଜୟମା ପାର୍ବତୀ ଦେବୀ ଜୟ ଠାକୁରାଣୀ ।।
ଅଗୁରୁ ଚନ୍ଦନ ଚୁଆ ଅବିର କର୍ପୁର,
ସୁବାସିତ ତୈଳ ଲେପ ଭରା ତୋ ଶରୀର
ବହଳ କଜଳ ଲେପ ଧାର ଝଟକଇ,
କଜଳେଇ ଠାକୁରାଣୀ ନାମେ ବିରାଜଇ ।।
ତୁମ ଆଶିଷ ପାଇଲେ ପଙ୍ଗୁ ଚାଲିପାରେ,
ଅଦୃଶ୍ୟକୁ ଦୃଶ୍ୟ ହୁଏ ତୁମରି ଦୟାରେ ।।
ତୁମ ଚରଣ ପାଦୁକ ତୁଣ୍ଡେ ଲଗାଇଲେ,
ସକଳ କାର୍ଯ୍ୟ ସଫଳ ହୁଏ କ୍ଷଣିକରେ ।।
ତୁମେ ଦୟାର ସାଗର କ୍ଷମା ପ୍ରଦାୟିନୀ,
ଭକତ ଭାବରେ ବନ୍ଧା ଦୁଃଖ ବିନାଶିନୀ ।।
ଦୁର୍ଗତି ନାଶିନୀ ମାତ ଦୟାର ସାଗର,
ଭାବରେ ସ୍ମରଣ କଲେ ନାହିଁ କାହିଁ ଡର ।।
ଜାୟା ଭଗ୍ନି ମାତା ତୁମେ ଜଗତ ତାରିଣୀ,
ଶକ୍ତି ଭକ୍ତି ଶାନ୍ତି ମୈତ୍ରୀ ଧୈର୍ଯ୍ୟ ପ୍ରଦାୟିନୀ ।
ପ୍ରଣତି କରୁଛି ମାତ ମୋ କଣ୍ଠରେ ବସ,
ସଦା ତୁମ ଗୁଣଗାଇ ହେବି ମୁଁ ହରଷ ।।
ତୁମ ପାଦତଳେ ବସି ଜଣାଏ ପ୍ରଣତି,
ତୁମ ବାତ୍ସଲ୍ୟ ମମତା ହେଉ ମୋତେ ପ୍ରାପ୍ତି ।।



# ଶ୍ରୀଲୋକନାଥ ଦେବ

ହର ହର ଶମ୍ଭୁ ଶଙ୍କର କୈଳାସ ପାର୍ବତୀପତି ହେ ଶିବ ।
କଜଳାଇପଲ୍ଲୀ ଶାସନ ଗ୍ରାମରେ ବିଜେ ଲୋକନାଥ ଦେବ ।।

ପୂର୍ବଦିଗେ ବିଜେ ହୋଇ ପଶ୍ଚିମରେ ଦେବୀ ପାର୍ବତୀ ଆସ୍ଥାନ ।
ଭକ୍ତି ଶକ୍ତି ମୈତ୍ରୀ ବାର୍ତ୍ତା ପ୍ରଚାରିଲ ଦେଲ ଶାନ୍ତିର ସନ୍ଧାନ ।।

ଗ୍ରାମର ମଙ୍ଗଳ ପାଇଁ ଜାଗରିତ ଭୂତଗଣଙ୍କ ସାଙ୍ଗରେ ।
ପିତା ମାତାରୂପେ ଶୁଭଦୃଷ୍ଟି ପାଇ ଖୁସି ସଭିଙ୍କ ମନରେ ।।

ତୁମ୍ଭ ଆଶୀର୍ବାଦ ଲଭି ଗ୍ରାମବାସୀ ଶାନ୍ତିରେ କାଳ କାଟନ୍ତି ।
ନାହିଁ ଭୟ ଭ୍ରାନ୍ତି ଉତ୍କଣ୍ଠା ଉଚ୍ଚାଟ  ସଦା ମଙ୍ଗଳ ଦେଖନ୍ତି ।।



# ସୂଚୀ


| କ୍ର ନଂ | ବିଷୟ | ପୃଷ୍ଠା |
|---|---|---|
| ୧. | ଲଡୁକେଶ ମହେଶ ପୀଠ | ୨୩ |
| ୨. | ନୟାଗଡ ଗଡଜାତ | ୨୯ |
| ୩. | ଅଖ୍ୟାତରୁ ପ୍ରଖ୍ୟାତ | ୩୭ |
| ୪. | ଜୈବ ବିବିଧତା | ୪୦ |
| ୫. | ଗାଁ ରାସ୍ତା | ୪୧ |
| ୬. | ପାଠାଗାର | ୪୪ |
| ୭. | ଶିକ୍ଷା ବ୍ୟବସ୍ଥା | ୪୮ |
| ୮. | ଡାକ ସେବା | ୫୭ |
| ୯. | ପଡୋଶୀଙ୍କ ସହ ସମ୍ପର୍କ | ୫୮ |
| ୧୦. | ମେଳା ମହୋତ୍ସବ ଓ ଯାନି ଯାତ୍ରା | ୫୯ |
| ୧୧. | ଲୋକକଳା ଓ ଚିତ୍ତ ବିନୋଦନ | ୬୯ |
| ୧୨. | ଭୋଜିଭାତ | ୭୨ |
| ୧୩. | ଗ୍ରାମ ଅଧିବାସୀ | ୭୫ |
| ୧୪. | ବିଶିଷ୍ଟ ବ୍ୟକ୍ତି | ୮୨ |
| ୧୫. | ଶେଷ ଦୁଇପଦ | ୧୪୭ |
| ୧୬. | ମୋ ବିଷୟରେ ପଦେ | ୧୫୦ |

# ସୂଚୀ


| କ୍ର ନଂ | ବିଷୟ | ପୃଷ୍ଠା |
|---|---|---|
| ୧ | ଲଡୁକେଶ ମହେଶ (ଲଡୁବାବା) | ୨୫ |
| ୨ | ନୟାଗଡ ଗଡଜାତ | ୩୧ |
| ୩ | ଅଖ୍ୟାତ ରୁ ପ୍ରଖ୍ୟାତ | ୩୯ |
| ୪ | ଜୈବ ବିବିଧତା | ୪୨ |
| ୫ | ଗାଁ ରାସ୍ତା | ୪୩ |
| ୬ | ପାଠାଗାର | ୪୬ |
| ୭ | ଶିକ୍ଷାବ୍ୟବସ୍ଥା | ୫୦ |
| ୮ | ଡାକସେବା | ୫୯ |
| ୯ | ପଡୋଶୀଙ୍କ ସହ ସମ୍ପର୍କ | ୬୦ |
| ୧୦ | ମେଳା ମହୋତ୍ସବ ଓ ଯାନି ଯାତ୍ରା | ୬୧ |
| ୧୧ | ଲୋକକଳା ଓ ଚିତ୍ତବିନୋଦନ | ୭୧ |
| ୧୨ | ଭୋଜିଭାତ | ୭୪ |
| ୧୩ | ଗ୍ରାମ ଅଧିବାସୀ | ୭୭ |
| ୧୪ | ଉତ୍କର୍ଷ | ୮୩ |
| ୧୪. | ବିଶିଷ୍ଟ ବ୍ୟକ୍ତି | ୮୫ |
| ୧୫. | ଶେଷ ଦୁଇପଦ | ୧୫୬ |

# ଲଡୁକେଶ ମହେଶ (ଲଡୁବାବା)

ଓଁ

ଶ୍ରୀ ଶ୍ରୀ ଶ୍ରୀ ଲଡୁକେଶ ମହେଶାୟ ନମଃ

ନମଃ ଶିବାୟ ଶାନ୍ତାୟ କାରଣଂ ତ୍ରୟହେ-ତବେ ।

ନିବେଦୟାମି ଚାତ୍ମାନଂ ଗତିସ୍ତ୍ୱଂ ପରମେଶ୍ୱର ।।

ଯଦ୍ ବୃନ୍ଦାରକ – ବୃନ୍ଦ ବନ୍ଦ୍ୟ ମବଭନ୍ ମୌଳୀନ୍ଦୁ ନୀଳ ଶ୍ରୀୟା, ଭସ୍ମ ଶାଣିତ ଗିତଭି ପ୍ରଣତିଭ ଗୌରୋଅପି କୃଷତ୍‌ବିଷା । ସଂପ୍ରାପ୍ତୋ ଦୁନୀଳ ନୀରଦ ରୁଚିଂ ଧିବୃତ୍ୟ ଯଦ୍ ଭାଗସେ, ତତ୍ ଶ୍ରୀମଦ୍ ବ୍ରହ୍ମଲିଙ୍ଗ ଶିବଙ୍କୟ ମନୁତେ କୃତାନଃ ସଦା ଲଡୁକେଶଃ ।।

ଶରଣକୁଳସ୍ଥ ଭିକାରୀପଡା ଗ୍ରାମର ଶ୍ରୀଯୁକ୍ତ ତୋଷବନ୍ତ କରଶର୍ମା ମହାଶୟଙ୍କ ସଗୃହିତ ତଥ୍ୟ ଅନୁଯାୟୀ, ଲଡୁକେଶ ମହେଶ ପୀଠ ସ୍ୱୟମ୍ଭୂ, ଓ କାହିଁ କେତେ କାଳର । ମୂଳ ନାମ ନକୁଳେଶ୍ୱର । ଏ ଅଞ୍ଚଳ ବହୁ ଆଗରୁ ଭଞ୍ଜବଂଶଙ୍କ ଅଧିନରେ ଥିଲା । ଏକଦା ରାଜାଙ୍କୁ ସ୍ୱପ୍ନାଦେଶ ହୋଇଥିଲା ଯେ ଉପଯୁକ୍ତ ସମୟରେ ତୁମ ବଂଶର ଦାୟାଦମାନଙ୍କୁ ଈଶ୍ୱରଙ୍କ ଶୁଭଦୃଷ୍ଟି ପଡିବ ଓ ସେମାନେ ଏକ ଲିଙ୍ଗର ସନ୍ଧାନ ପାଇବେ । ସମୟକ୍ରମେ, ଏ ଭୂଲିଙ୍ଗର ଆର୍ବିଭାବ ଓ ମାହାତ୍ମ୍ୟ ବିଷୟରେ ସୂଚନା ମିଳିବା ପରେ ରାଜା ଲଡୁବାବାଙ୍କର ପରମ ଭକ୍ତ ହେଲେ । ତାର ପ୍ରମାଣ ସ୍ୱରୂପ ଏଠାରେ ଥିବା ଭଞ୍ଜ ସାହି ସୂଚନା ଦିଏ ଯେ, ଭଞ୍ଜ ବଂଶର ରାଜା ଠାକୁରଙ୍କୁ ପୂଜା କରିବା ପାଇଁ ଅସି ଏଠାରେ ରହୁଥିଲେ ।

କରଶର୍ମାଙ୍କ କହିବା ଅନୁସାରେ ବର୍ତ୍ତମାନ ଯେଉଁ ଦେଉଳ ଆମେ ଦେଖୁଅଛେ, ତାର ମୂଖ୍ୟ ଅଂଶ (ଗର୍ଭଗୃହ, ଭୃଷଭ ଆସ୍ଥାନ ଓ ଘଣ୍ଟ ବାଡିଆ କକ୍ଷ) ଷଷ୍ଠ ଶତାବ୍ଦିର ଓ ଏହାକୁ ରଣପୁର ରାଜା ଗଢିଥିଲେ। ମନ୍ଦିରର ସଂପ୍ରସାରଣ ଓ



ପାର୍ଶ୍ୱଦେବଙ୍କ ଆସ୍ଥାନ ପରବର୍ତ୍ତୀ କାଳରେ ନୟାଗଡ ରାଜାଙ୍କ ଦ୍ୱାରା ସମାପନ ହେଲା ।

ଅନ୍ୟ କେତେଜଣ ଗବେଷକଙ୍କ ମତରେ ଏ ଲିଙ୍ଗ ସ୍ୱୟମ୍ଭୂ ଏବଂ ଏହାର ମୂଳ ଉତ୍ସ ବିଷୟରେ ଆକଳନ କରିବା ସମ୍ଭବ ନୁହେଁ । କାରଣ ପୁରାଣବର୍ଣ୍ଣିତ ସୂଚନା ଆଧାରରେ ଓ ନିକଟରେ ଥିବା ଅତ୍ରୀ ମୁନିଙ୍କ ଆଶ୍ରମକୁ ଅନୁଧ୍ୟାନ କଲେ ଜଣାଯାଏ, ଏ ଲିଙ୍ଗ ତ୍ରେତୟା ଯୁଗରେ ପୂଜା ପାଉଥିବା କଥା ଉଲ୍ଲିଖିତ ଅଛି । ଭଞ୍ଜ ବଂଶୀୟ ରାଜାଙ୍କ ଲିଖିତ **ସ୍ୱପ୍ନାବତୀ** କାବ୍ୟରେ ପ୍ରଭୁ ରାମଚନ୍ଦ୍ର ଏଇ ଅପୂଜିତ ନକୁଳେଶଙ୍କୁ ଦର୍ଶନ କରି ଅତ୍ରି ମୁନିଙ୍କ ଆଶ୍ରମ ଦେଇ ଓଡଗାଁ ଅଭିମୁଖେ ଗମନ କରିଥିଲେ । ସେହିକ୍ରମେ, ଦ୍ୱାପର ଯୁଗରେ ମଧ୍ୟ ଏ ପୀଠର ମାହାତ୍ମ୍ୟ ଥିବା କଥା ଉଲ୍ଲେଖ ଅଛି । କାରଣ ରାଜା ବାଣାସୁର ଅସୁରଢିପାରେ ତାଙ୍କ ଗଡ ନିର୍ମାଣ କରି ରାଜତ୍ୱ କରିବା ସମୟରେ କୁସୁମି ନଦୀ ପାର ହୋଇ ଏହି ଶିବଲିଙ୍ଗଙ୍କୁ ପୂଜାର୍ଚ୍ଚନା କରିବା ସୂଚନା ଲିପିବଦ୍ଧ ଅଛି ।

**ବାଣାସୁର ଉପାଖ୍ୟାନ**

କୁସୁମି ନଦୀର ଅପର ପାର୍ଶ୍ୱରେ ଆଜିର ଅସୁରଢିପା ଗ୍ରାମରେ ବାଣାସୁରର ନଅର ଥିଲା । ସେ ବଡ ଅତ୍ୟାଚାରୀ ଥିଲା । ସେ ତ୍ରିଲୋଚନଙ୍କୁ ଆରାଧ୍ୟ ଦେବତା ରୂପେ ପୂଜା କରେ । ଭଣ୍ଡାର ପାଦଦେଶସ୍ଥ ଝରଣା କୂଳରେ ଗିଲଲଟି ଓ ଶିଆଳି ଲତା ଆଚ୍ଛାଦିତ ସ୍ୱୟମ୍ଭୁ ଶମ୍ଭୁଙ୍କୁ ଦେଖିବା ପରେ ସେ ପ୍ରତିଦିନ ଏକାନ୍ତରେ ସେଠାକୁ ଯାଇ ପୂଜାର୍ଚ୍ଚନା କରେ । ଏକଦା ପୂଜା ସାରି ଫେରିବା ସମୟରେ ଏକ ସୁନ୍ଦର ଅବଳା ନାରୀକୁ ଦେଖି ତାର ମନରେ କାମ ପିପାସା ଜାଗ୍ରତ ହେଲା । ଏପରି ଏକ ଅପ୍ରତ୍ୟାଶିତ ଘଟଣାରେ ନାରୀଟି ଭୟଭୀତ ହୋଇ ଦଉଡିବାକୁ ଲାଗିଲା । କିନ୍ତୁ

ନିରୁପାୟ । ଆର୍ତ୍ତ କଣ୍ଠରେ ଶିବଙ୍କୁ ପ୍ରାର୍ଥନା କଲା । ହଠାତ୍ ଏକ ତ୍ରିଶୂଳ ଆସି ନିମିଷକ ମଧ୍ୟରେ ବାଣସୁର ବକ୍ଷକୁ ବିଦ୍ଧ କରି ବଧ କଲା ।

ଅସୁରର ବଧ ପରେ ସେ ଅଞ୍ଚଳରେ ଶାନ୍ତି ସିନା ଖେଳିଲା କିନ୍ତୁ ତା'ର ଆରାଧ୍ୟ ଦେବତା ତ୍ରିଲୋଚନ ଅପୂଜା ରହିଲେ । ସମୟ ସ୍ରୋତରେ, ସେବର ଜନବସତି ନିଶ୍ଚିହ୍ନ ହୋଇ ଏ ଅଞ୍ଚଳ ଘନ ବନାନୀରେ ପରିବେଷ୍ଟିତ ହୋଇଗଲା ଓ ଏ ପୀଠ ମଧ୍ୟ ଲୋକଙ୍କ ମନରୁ ବିସ୍ମୃତ ହୋଇଗଲା । ଠାକୁର ପୂଜା ପାଇଲେ ନାହିଁ । ଦ୍ୱାପର ଅନ୍ତେ କଳିର ଆଗମନରେ ନୂତନ (କନ୍ଧ, କୋହ୍ଲ) ଜନଜାତିର ଅଭ୍ୟୁଦୟ ହେଲା । ସେମାନେ ପ୍ରାୟତଃ ଲଙ୍ଗୁଳି ସଂପ୍ରଦାୟର । ସେମାନଙ୍କ ମୁଖିଆ ବଣ ମଧ୍ୟରେ ଏ ଲିଙ୍ଗଙ୍କୁ ଦେଖିବାପରେ ଅଞ୍ଚଳରେ ଖବର ପ୍ରଚାରିତ ହେଲା ଓ ପୀଠର ପ୍ରସିଦ୍ଧି ବଢ଼ିଲା ।

ଲୋକକଥା ଆଧାରରେ, ଶରଣକୁଳସ୍ଥ ଭଣ୍ଡାର ମୁଣ୍ଡିଆ ପାଦଦେଶରେ ଘନ ଜଙ୍ଗଲ ମଧ୍ୟରେ ଏକ ଛୋଟ ଝରଣା ବହୁଥିଲା ଓ ସେଇ ଝରଣାର ପାଣି ଦକ୍ଷିଣ ଦିଗକୁ ପ୍ରବାହିତ ହୋଇ କୁସୁମି ନଦିରେ ମିଶୁଥିଲା । ବର୍ତ୍ତମାନ ମନ୍ଦିର ବେଢ଼ାରେ ଥିବା ପୁଷ୍କରିଣୀ ହିଁ ତାର ଚିହ୍ନ । ଝରଣାପାର୍ଶ୍ୱସ୍ଥ ଗିଲଲଟି ଓ ଶିଆଳିଲତା ଉହାଡରେ ଯେଉଁ ଲିଙ୍ଗ ଆତ୍ମପ୍ରକାଶ କରିଥିଲେ କିନ୍ତୁ କାହାର ଦୃଷ୍ଟିକୁ ଆସିନଥିଲେ, ସମୟକ୍ରମେ, ପୂର୍ବରୁ ବର୍ଣ୍ଣିତ ଆଦିବାସୀ, କନ୍ଧ ବା କୋହ୍ଲ ଜନଜାତି ସମ୍ପ୍ରଦାୟର ଲୋକେ ଦେଖିବା ପରେ ପୂଜାର୍ଚ୍ଚନା ଆରମ୍ଭ କରିଦେଲେ । ପୀଠର ମହିମା ବଢ଼ିବା ସହିତ ପ୍ରଶାସକଙ୍କ ଦୃଷ୍ଟି ଆକର୍ଷଣ ହେବାରୁ ଏପୀଠର ନାମ କରଣ ସହ ସେବାୟତ ନିଯୁକ୍ତି କରାଯାଇ ନୀତିକାନ୍ତିର ସୁବନ୍ଦୋବସ୍ତ କରାଗଲା । କେତେକ ଗବେଷକଙ୍କ ମତରେ, ଜାତି ବର୍ଣ୍ଣ କୁଳ ନିର୍ବିଶେଷରେ ବିଭିନ୍ନ ସଂପ୍ରଦାୟର ସେବାୟତ ଠାକୁରଙ୍କ ପୂଜାର୍ଚ୍ଚନା କାମରେ ନିୟୋଜିତ ହୋଇଥିବାରୁ ଲିଙ୍ଗଙ୍କୁ ନକୁଳେଶ୍ୱର ନାମରେ ନାମିତ କରାଯାଇଥିଲା । ଅନ୍ୟ କେତେକ ଗବେଷକଙ୍କ ମତରେ ସେ ଅଞ୍ଚଳରେ ବାସକରୁଥିବା ଜନଜାତିଙ୍କୁ ଲଙ୍ଗୁଳି କନ୍ଧ କହୁଥିବାରୁ ସେ ଶବ୍ଦର ଅପଭ୍ରଂଶରେ ନକୁଳୀ ଶବ୍ଦକୁ ନେଇ ଲିଙ୍ଗ ନକୁଳେଶ୍ୱର ନାମରେ ନାମିତ ହେଲେ ।

ପରବର୍ତ୍ତୀ ସମୟରେ, ଏ ଲିଙ୍ଗର ନାମ କରଣ ବିଷୟରେ ଅନ୍ୟ ଏକ ଲୋକକଥା ଶୁଣିବାକୁ ମିଳେ । ଶିବ ଗୋମାତା ରୂପରେ ହରିହରପୁର ଗ୍ରାମର ଜମିଦାରଙ୍କ ଘରେ ଜନ୍ମନେଲେ । ଲଡୁଆ ନାମକ ଗୋପାଳ ଜମିଦାରଙ୍କ ଗାଈମାନଙ୍କୁ

ଚରାଇବାପାଇଁ ମୁଣ୍ଡିଆର ପାଦଦେଶରେ ଥିବା ଚାରଣଭୂମିକୁ ନିୟମିତ ନିଏ । ଦିନକର ଘଟଣା । ଲଡୁଆ ଲକ୍ଷକଲା, ଏକ ଗାଈ ଗୋଠଛାଡି କୁସୁମୀ ନଦୀ ପାର ହୋଇ ବଣ ଭିତରକୁ ଯାଉଛି, କିନ୍ତୁ ସନ୍ଧ୍ୟାପୂର୍ବରୁ, ଠିକ୍ ସମୟରେ ଘରକୁ ଫେରି ଆସୁଛି । ଅବଶ୍ୟ ସେ ସେଥିପ୍ରତି ବିଶେଷ ଧ୍ୟାନ ଦେଇନଥିଲା। କିଛିଦିନର ବ୍ୟବଧାନ ପରେ ମାଲିକ ଲଡୁଆକୁ ଅଭିଯୋଗ କଲେ ଯେ, "ମୋର ସେ କାଳୀ ଗାଈ ଏବେ କେତେଦିନ ହେଲା କ୍ଷୀର କମ୍ ଦେଉଛି । କାରଣ କଣ ? ତୁ କଣ ଫନ୍ଦି କରୁଚୁ କି ?" ଜମିଦାରଙ୍କ କଥା ଶୁଣି ଲଡୁଆର ମନ ଭାରି କଷ୍ଟ ହେଲା । ଦୋଷ ନଥାଇ ଅଜଥା ସନ୍ଦେହ ଘେରକୁ ଆସିଲା। ଗାଈଟି ଏଇ କେତେଦିନ ହେଲା ଗୋଠଛଡା ହୋଇ ଅନ୍ୟ ଦିଗକୁ ଯିବା କଥା ହଠାତ୍ ତା'ର ମନେ ପଡିଲା । ତେଣୁ ପରଦିନ ଗାଈ ପଛରେ ସେ ଯାଇ ଯାହା ଦେଖିଲା ସ୍ତବ୍ଧ ହେଇଗଲା । ଗିଲ ଓ ଶିଆଳି ଲଟା ଭିତରେ ଗାଈ ଠିଆ ହେଇଛି, ତା'ର ଚିରରୁ କ୍ଷୀର ଆପେ ବୋହି ଭୂମିରେ ପଡୁଛି । ଯଦିଓ ଆଶ୍ଚର୍ଯ୍ୟ ହେଲା, କିନ୍ତୁ ମାଲିକଙ୍କ ପୂର୍ବ ଦିନର ସନ୍ଦେହ ମନେପଡିବାରୁ କ୍ରୋଧରେ ଗାଈ ପିଠିକୁ ଠେଙ୍ଗାରେ ଶକ୍ତ ପାହାର ଦେଲା । ଗାଈ ବିଚାରା କଷ୍ଟରେ ବୋବାଳି ଛାଡି କ୍ଷୀପ୍ର ବେଗରେ ପଳାଇଗଲା । କିନ୍ତୁ ଲଡୁଆର ସନ୍ଦେହ ଅଧିକ ଘନିଭୂତ ହେଲା । କାରଣ, ଯେଉଁ ସ୍ଥାନରେ ଗାଈ ଠିଆ ହୋଇଥିଲା, ସେ ଯାଗାଟି ଏକ ଚକା ପଥର ଖଣ୍ଡ । ଦୁଇ ପାଖରେ ଗାଈ ଖୁରା ଦାଗ, ମଝିରେ ଲମ୍ୱା ଫାଟ । ଅନ୍ୟ ଏକ ବିଶେଷତ୍ୱ ହେଲା, ସେ ଫାଟରୁ ରୁଧିର ରଙ୍ଗର ତରଳ ପଦାର୍ଥ ବହିଚାଲୁଛି । ସେ ଡରରେ ସେ ସ୍ଥାନ ଛାଡି ଯାଇ ଜମିଦାରଙ୍କୁ ସମସ୍ତ ଘଟଣା ବର୍ଣ୍ଣନା କଲା । କଥାଟା ତ୍ୱରିତ ବେଗରେ ପ୍ରଚାର ହେଇଗଲା । ଜମିଦାରଙ୍କ ସହିତ ଆଖପାଖ ଗାଁର ଲୋକମାନେ ଭଣ୍ଡାର ମୁଣ୍ଡିଆକୁ ଯାଇ ଘଟଣାର ଅନୁଧ୍ୟାନ କରିବା ପରେ ଜାଣିପାରିଲେ ଯେ ସେଇଟି ଏକ ଶିବ ଲିଙ୍ଗ ଓ ବହୁ ପୁରା କାଳର ।

ସେପରି ଏକ ଅଲୌକିକ ଘଟଣାକୁ ଜମିଦାର ରଣପୁର ରାଜାଙ୍କ ଆଗରେ ବର୍ଣ୍ଣନା କରିବା ପରେ ରାଜା ସ୍ୱୟଂ ଆସି ଲିଙ୍ଗ ଦର୍ଶନ କଲେ । ଲିଙ୍ଗାକୃତି ଶିଳା ଦେହରେ ଅର୍ଦ୍ଧ ଚନ୍ଦ୍ର, ଯଜ୍ଞଉପବୀତ, ଅର୍ଦ୍ଧ ଶିବ ଓ ଅନ୍ୟ ଅର୍ଦ୍ଧ ବିଷ୍ଣୁଙ୍କ ଚିହ୍ନ, ଗାଈ ଖୁରା ଆଘାତରେ ସେ ସ୍ଥାନରୁ ରୁଧିର ସ୍ରାବହେଉଚି, ତୁଳସୀ,ବିଲ୍ୱ ବୃକ୍ଷ ସହ ଗିଲଲଟି ଓ ସିଆଳିଲତା ଉହାଡ ଏବଂ ଅନେକ ଶିଳା ଖଣ୍ଡ । ରାଜା ଅଭିଭୂତ ହୋଇଗଲେ । ଭକ୍ତିରେ ଗଦ୍ଗଦ ହୋଇ କପିଳାକୁ କହିଲେ ତୁମେ ଧନ୍ୟ । ତୁମେ

ପ୍ରଭୁଙ୍କ ଦର୍ଶନ ପାଇଲ । ପୂଜାର୍ଚ୍ଚନା କରିବାକୁ ଜମିଦାରଙ୍କୁ ଆଦେଶ ଦେଇ ନଅରକୁ ଫେରିଲେ । ରାଜ ପରିଷଦଙ୍କ ପରାମର୍ଶ କରିବା ପରେ ବି ସେ ଲିଙ୍ଗର ରହସ୍ୟ ଜାଣି ପାରିଲେ ନାହିଁ । ରାଜାଙ୍କୁ କିନ୍ତୁ ସ୍ୱପ୍ନାଦେଶ ହେଲା, "ତୁମେ ମୋ ପାଇଁ ମନ୍ଦିର ନିର୍ମାଣ କରି ଲଡୁଆ ନାମରେ ନାମିତ କର" । ରାଜାଙ୍କ ନିଦ୍ରାଭଙ୍ଗ ହୋଇଗଲା । ରାତି ନପାହୁଣୁ ସଭା ପରିଷଦ ଡକାଇ ମନ୍ଦିର ନିର୍ମାଣ ପାଇଁ ସକଳ ବ୍ୟବସ୍ଥା କରିବାକୁ ଆଦେଶ ଦେଲେ । ରଣପୁର ରାଜାଙ୍କ ଦ୍ୱାରା ମନ୍ଦିରର ଗର୍ଭଗୃହ ଭୃଷଭଙ୍କ ଆସ୍ଥାନ ସହ ଘଣ୍ଟ ବାଡିଆ କକ୍ଷ ପର୍ଯ୍ୟନ୍ତ ନିର୍ମାଣ କାର୍ଯ୍ୟ ସମ୍ପର୍ଣ୍ଣ କରାଗଲା । ଠାକୁରଙ୍କ ପୂଜା ଓ ନୀତି କାନ୍ତି ପାଇଁ ସେବକ ନିଯୁକ୍ତି ସହଜମି ଖଞ୍ଜିଦେଲେ। ରାଜାଙ୍କ ପ୍ରସ୍ତାବ କ୍ରମେ ଲଡୁଆ ଗଉଡ ଏ ଲିଙ୍ଗଙ୍କୁ ଠାବ କରିପାରିଥିବା ହେତୁ ନକୁଳେଶ୍ୱର ପରିବର୍ତ୍ତେ ଲିଙ୍ଗର ନାମ ଲଡୁକେଶ୍ୱର ରଖାଗଲା । ପରବର୍ତ୍ତୀ କାଳରେ, ନୟାଗଡ ରାଜା (ଦ୍ୱିତୀୟ) ଶ୍ରୀ ଜୟଗୋବିନ୍ଦ ସିଂହ, ଏ ଅଞ୍ଚଳ ନିଜ ଅଧୀନକୁ ନେବାପରେ ଲଡୁକେଶ ମହେଶପୀଠର ସକଳ ବୃତ୍ତାନ୍ତ ଶୁଣି ଭକ୍ତିପୂର୍ଣ୍ଣ ମନରେ ଠାକୁରଙ୍କୁ ଆରାଧନା କଲେ ଓ ମନ୍ଦିରର ସମ୍ମୁଖ ଅଂଶ ସହ ପାର୍ଶ୍ୱ ଦେବଙ୍କ ମନ୍ଦିର ନିର୍ମାଣ କରିବା ପାଇଁ ପ୍ରତିଶ୍ରୁତି ବଦ୍ଧ ହେଲେ ।

ଓଡିଶାର ପ୍ରସିଦ୍ଧ ଶୈବ ପୀଠ ଲିଙ୍ଗରାଜଙ୍କ ପରି ଲଡୁବାବାଙ୍କ ପୀଠରେ ହରି ହର ପୂଜା ପାଆନ୍ତି । ଲିଙ୍ଗର ଆକୃତି ଚକ୍ରାକାର, ଶକ୍ତିଙ୍କଠାରୁ ଛଅଇଂଚ ଓ ଭୂମିରୁ ଏକ ଫୁଟଉଚ୍ଚ । ଶକ୍ତିଙ୍କ ଚତୁର୍ପାର୍ଶ୍ୱରେ ଏକାଦଶ ରୁଦ୍ର ବିଦ୍ୟମାନ । ଆସ୍ଥାନର ଉତ୍ତରରେ ବିଷ୍ଣୁ, ଦକ୍ଷିଣରେ ଶିବ, ମସ୍ତକରେ ଅର୍ଦ୍ଧଚନ୍ଦ୍ର। ଦକ୍ଷିଣ ଓ ଉତ୍ତର ପାର୍ଶ୍ୱରେ ଗାଈର ଖୁରା ଚିହ୍ନ ।

ବେଢାରେ ନବଗ୍ରହ, ଜଗନ୍ନାଥ, ପାର୍ବତୀ, ସୂର୍ଯ୍ୟ, ବାବା ବୈଦ୍ୟନାଥ, ଅନ୍ନପୂର୍ଣ୍ଣା, ରଘୁନାଥ, ପଂଚମୂଖୀ ହନୁମାନ ଓ ନବଶକ୍ତି ବିଦ୍ୟମାନ । ଠାକୁରଙ୍କ ନୀତିରେ ତିନି ଧୂପ ଓ ପାଞ୍ଚ ଅବକାଶ କାହିଁ କେତେକାଳରୁ ପ୍ରଚଳିତ ହୋଇ ଆସୁଅଛି (ସକାଳ ଅଁଳା ଲାଗି, ଦନ୍ତ ମାର୍ଜନା, ସ୍ନାନ, ଅବକାଶ, ସ୍ନାନ, ଫୁଲ ବେଲପତ୍ର ଲାଗି, ବଲ୍ଲଭ ଭୋଗ, ସକାଳ ଶଙ୍ଖୁଡି ଭୋଗ, ସୁଆର ଓ ମାଳି ଭୋଗ, କ୍ଷୀରାଭିଷେକ, ଜଳସ୍ନାନ, ମଧ୍ୟାହ୍ନ କ୍ଷୀରି ପିଠା ଭୋଗ, ପହଡ, ସନ୍ଧ୍ୟା ଆଳତୀ, ନିଶଙ୍ଖୁଡି ବାଳ ଭୋଗ, ଟେରାନୀତି, ରାଶିତେଲ ମର୍ଦ୍ଦନ, ସ୍ନାନ, ସନ୍ଧ୍ୟା ଧୂପ, ସ୍ନାନ, ଚତୁଃସମ ବେଶ, ବଡସିଂହାର ଧୂପ, ପହଡ)

**ଶରଣକୂଳ**

ଅସୁରିଢିପା ଗଡ (ବାଣାସୁର ଗଡ) ଅଞ୍ଚଳରେ ଯେଉଁ ଅନାର୍ଯ୍ୟ ଲଙ୍ଗୁଳି ବା ନକୁଳୀ ସଂପ୍ରଦାୟର ଜନଜାତି ବସବାସ କରୁଥିଲେ, ସମୟକ୍ରମେ, ସେମାନଙ୍କର ସ୍ଥାନଚ୍ୟୁତ ଘଟି ସଭ୍ୟ ସମାଜ ଗଢି ଉଠିଲା । ୧୯୩୦ ବନ୍ଦୋବସ୍ତରେ ଲଡୁକେଶ ମହେଶ ପୀଠରେ ହରିହର ବିଜେ ଥିବାରୁ, ସେ ଗ୍ରାମର ନାଁ ହରିହରପୁର ରଖାଗଲା । ହରିହର ପୁର ସହିତ ଅନ୍ୟ ଗାଁ ବି ଗଢି ଉଠିଲା । ଯଥା, ଭେଟୁଗାଁ, ନରେନ୍ଦ୍ରପୁର । ଠାକୁରଙ୍କ ସେବାରେ ନିୟୋଜିତ ବିଭିନ୍ନ ବର୍ଗର ସେବାୟତ ମାନଙ୍କପାଇଁ ଯେଉଁ ସାହି ଗୁଡିକ ଗଢିଉଠିଲା (ପାଟଣା) ତାର ସୂଚି ନିମ୍ନରେ ପ୍ରଦତ୍ତ ହେଲା ।

ସରପରା/ ସର୍ବରା ପାଟଣା ( ଗୁଡିଆ), ଏକଚାଳିଆ ପାଟଣା / ନରେନ୍ଦ୍ରପୁର ରତ୍ନ ସାହି (ବ୍ୟବସାୟୀ – ମସଲା), ଗୋଧନ/ ରତ୍ନ ପାଟଣା (ମାଳି), ଭଞ୍ଜ ପାଟଣା (ଭଞ୍ଜ ରାଜାଙ୍କ ବାସ), ଚନ୍ଦ୍ର ଶେଖରପୁର ପାଟଣା (ହଳିଆ) , ହାଟ ପାଟଣା/ ଛାମୁ ସାହି (ମାଳି) , କମଳାଦେଇପୁର ପାଟଣା/ ସୁଆର ସାହି ( ବ୍ରାହ୍ମଣ ସେବକ ଓ ଗଜେନ୍ଦ୍ରପୁର ପାଟଣା (ଭଣ୍ଡାରୀ – ମଶାଲ) । ଏସବୁ ଗାଁ ମାନଙ୍କରେ ସେବାୟତ ଠାକୁରଙ୍କ ସେବାରେ ନିୟୋଜିତ ସେବକମାନେ ଜାଗିରି ପାଇ ବସବାସ କଲେ । ଅବଶ୍ୟ ସତାର ଖାଁଙ୍କ ସମୟରେ (୧୯୨୭ ବନ୍ଦୋବସ୍ତ) ସମସ୍ତ ରେଭେନ୍ୟୁ ଗ୍ରାମ ମାନଙ୍କୁ ମିଶାଇ ଶରଣକୂଳ ନାମିତ ହେଲା । ସବୁ ବର୍ଗର ସେବାୟତମାନଙ୍କୁ ଶରଣ ଦେଇ ଥିବାରୁ ଏ ଯାଗାର ନାମ ଶରଣକୂଳ ରଖାଗଲା ।

୧.ଭଞ୍ଜ ରାଜାଙ୍କ ଅମଳରେ, କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଭଞ୍ଜସାହି କରିବା ସୂଚନା ଓ ସେଠାରେ ରହି ପୂଜାର୍ଚ୍ଚନା କରିବା କଥା ବିଚାରକୁ ନେଲେ, ମନ୍ଦିର ଅନ୍ତତଃ ଷୋଡଶ ଶତାବ୍ଦି ପୂର୍ବର ବୋଲି କୁହାଯାଇ ପାରେ ।

୨. ପ୍ରତ୍ନତତ୍ତ୍ୱବିତ୍ ମନ୍ଦିରର ପଦ୍ମପୃଷ୍ଠ ଶିଳା ଗବେଷଣା କରି ନିଷ୍କର୍ଷ କରିଛନ୍ତି ଯେ, ୧୫୦୦ ଶତାବ୍ଦୀ ପୂର୍ବରୁ ଗଢ଼ାଯାଇଅଛି ।

୩. ରାଜା ଜୟଗୋବିନ୍ଦ ସିଂହ (୧୨୮୩-୧୩୧୩) ମନ୍ଦିରର ମୁଖଶାଳା ଓ ପାର୍ଶ୍ୱଦେବତା ଗଢିଥିଲେ ।

ତେଣୁ ଲୋକକଥା ହେଉ ବା ଗବେଷଣା ଲବ୍ଧ ତଥ୍ୟ ହେଉ, ଲଡୁକେଶ ମହେଶ ମନ୍ଦିର, ଅନ୍ତତଃ ଏକ ହଜାର ବର୍ଷ ପୁରୁଣା ।



# ନୟାଗଡ ଗଡଜାତ

ନଅଟି ଗଡକୁ ମିଶାଇ ନୟାଗଡ । ଏ ରାଜ୍ୟର ସୀମା ୧୪ କ୍ରୋଶ । ଦକ୍ଷିଣରେ ବାଣପୁର, ଦକ୍ଷିଣ ପୂର୍ବରେ ରଣପୁର, ପୂର୍ବରେ ଖୋର୍ଦ୍ଧା, ଉତ୍ତରରେ ଖଣ୍ଡପଡା, ପଶ୍ଚିମରେ ଗଂଜାମର ଭଗବତୀ ପ୍ରସାଦ ।

ଏ ରାଜ୍ୟର ପ୍ରଥମ ରାଜା ଶ୍ରୀଯୁକ୍ତ ସୂର୍ଯ୍ୟମଣି ସିଂହ । ତାଙ୍କ ଜୀବନୀ ଅନୁଶୀଳନ କଲେ ଜଣାଯାଏ, ସେ ମଧ୍ୟପ୍ରଦେଶ ରେବା ରାଜ୍ୟର ରାଜକୁମାର। ମାତାଙ୍କ ଦେହାନ୍ତ ପରେ ବିମାତାଙ୍କ ଅତ୍ୟାଚାରରେ ଅଣନିଶ୍ୱାସୀ ହୋଇ ସାନଭାଇ ଶ୍ରୀ ଚନ୍ଦ୍ରମଣି ସିଂହଙ୍କ ସହ ଓଡିଶା (ଉତ୍କଳ) ଚାଲି ଆସିଲେ । ଦୁଇ ରାଜକୁମାର ବଡ ସାହାସୀ, ବଳବାନ ଓ ପ୍ରବଳ ପରାକ୍ରମୀ ଥିଲେ । ସେମାନେ ଜଗନ୍ନାଥ ମହାପ୍ରଭୁଙ୍କ ମାହାତ୍ମ୍ୟ ଶୁଣିଥିଲେ । ତେଣୁ ପ୍ରଭୁଙ୍କ ଆଶୀର୍ବାଦ ନେବାପାଇଁ ସମ୍ବଲପୁର ଦେଇ ଉତ୍କଳରେ ପ୍ରବେଶ କଲେ । ମା' ସମଲେଶ୍ୱରୀଙ୍କୁ ଦର୍ଶନ କରିବାପରେ ରେଢାଖୋଲ, ଅନୁଗୁଳ ଓ ଢେଙ୍କାନାଳ ଦେଇ କଟକରେ ପହଞ୍ଚିଲେ । ସେଠାରେ ମା କଟକଚଣ୍ଡୀଙ୍କୁ ଦର୍ଶନ କଲେ । ତା'ପରେ ସାକ୍ଷୀଗୋପାଳ ଦେଇ ପୁରୀରେ ପହଞ୍ଚିଲେ । ଜଗନ୍ନାଥଙ୍କ ଦର୍ଶନ ପାଇ ଦୁଇଭାଇ ନିଜକୁ ଧନ୍ୟ ମନେକଲେ ଓ ପ୍ରଭୁଙ୍କ ନିକଟରେ ନିଜର ଦୁଃଖ ଜଣାଇ ଆଶୀର୍ବାଦ ଭିକ୍ଷା କଲେ । ପାର୍ଥନା କରିବା ସମୟରେ ପ୍ରଭୁଙ୍କ ମସ୍ତକରୁ ଏକ ପୁଷ୍ପ ଖସିବାରୁ, ପ୍ରଭୁଙ୍କ କରୁଣା ପ୍ରାପ୍ତିହେବା ଅନୁଭବ କରି ଆତ୍ମ ସନ୍ତୋଷ ଲାଭ କଲେ । ପୁରୀରେ ରାତ୍ରିଯାପନ କରିବା ଅବସରରେ ସ୍ୱପ୍ନାଦେଶ ପାଇ ପରଦିନ ରେବା ମଠ ଦର୍ଶନ କଲେ । ଦୁଇଭାଇ ଜାଣିପାରିଲେ ଯେ, ମଠାଧିକାରୀ ଆଉ କେହି ନୁହଁନ୍ତି, ବାଘେଇ ବଂଶର ତାଙ୍କ ଲଗ୍ନିକ ଭାଇ । ସେ କୋଷ୍ଟ ବ୍ୟାଧିରେ ପୀଡିତ ହୋଇ ପ୍ରଭୁଙ୍କ ଶରଣ ପଶିଲେ ଓ

ତାଙ୍କ ଆଶୀର୍ବାଦରୁ ରୋଗମୁକ୍ତ ହେଲେ । ସେକଥା ଜାଣିବା ପରେ ପ୍ରଭୁଙ୍କ ପ୍ରତି ସେମାନଙ୍କର ବିଶ୍ୱାସ ଓ ଭକ୍ତି ଅତୁଟ ହେଲା । ସେହିଦିନ ରାତିରେ ସୂର୍ଯ୍ୟମଣିଙ୍କୁ ସ୍ୱପ୍ନ ହେଲା, "ତୁମେ ପଶ୍ଚିମ ଦିଗକୁ ଗମନ କରି ତୁମ ରାଜ୍ୟ ସ୍ଥାପନା କର", କିନ୍ତୁ ମନେରଖ ! ଯେଉଁ ବାଟଦେଇ ଏଠାକୁ ଆସିଲ, ସେ ବାଟରେ ଯିବନାହିଁ" । ପ୍ରତ୍ୟୁଷରୁ ଦୁଇଭାଇ ଶଯ୍ୟାତ୍ୟାଗ କରି ସମୁଦ୍ରରେ ବୁଡ ପକାଇଲେ ଓ ଅଶ୍ୱାରୋହଣ କରି ପଶ୍ଚିମ ଦିଗକୁ ଅଗ୍ରସର ହେଲେ । ଚତୁର୍ଦ୍ଦିଗ ଜଙ୍ଗଲରେ ପରିବେଷ୍ଟିତ । ବାଘମାରି (ଅତ୍ରି) ଉଷ୍ଣପ୍ରସ୍ରବଣରେ ସ୍ନାନ କରି ବୋଲଗଡଠାରେ ରାତ୍ରିଯାପନ କଲେ । ପରଦିନ ଗୁନାମାଟି ଗାଁରେ ପ୍ରବେଶକରି ଶୁଣିଲେ, ବାଘର ଉପଦ୍ରବରେ ଅନେକ ଅଧିବାସୀ ଜୀବନ ହାରିଲେଣି । ସୂର୍ଯ୍ୟମଣି ସାହସର ସହ ବାଘ ଓ ବାଘୁଣୀଙ୍କୁ ବଧ କରିଦେବାରୁ ସେ ଅଞ୍ଚଳବାସିଙ୍କର ପ୍ରିୟଭାଜନ ହେଲେ ଏବଂ ସେମାନଙ୍କ ସ୍ନେହ ଓ ସହାୟତାରେ ଏକ ଗଡ ନିର୍ମାଣ କଲେ । ସେଠାକାର ଆରାଧ୍ୟ ଦେବତା ଦୁତିକେଶ୍ୱରଙ୍କ ମହିମା ଶୁଣି ଦେବୀଙ୍କ ଆଶୀର୍ବାଦ ଭିକ୍ଷା କରି ପୂଜାର୍ଚ୍ଚନା କଲେ । ପୁନାମାଟି ପରକାଳରେ ନୟାଗଡ଼ ରାଜ୍ୟର ଏକ ପ୍ରେରଣା ରୂପେ ପରିଗଣିତ ହେଲା ।

ପୌରାଣିକ କିମ୍ବଦନ୍ତି ଅନୁଯାୟୀ, ସେ ଅଞ୍ଚଳର ବାରେଡି ଗ୍ରାମର ଦୂତୀକା ନାମକ ଏକ ସୁନ୍ଦର ଅଦିବାସୀ କନ୍ୟା ଜଙ୍ଗଲରୁ କନ୍ଦା ସଂଗ୍ରହ କରିବାକୁ ସବୁଦିନ ଯାଏ । ଦିନେ ଗୋଟିଏ ବଡ କନ୍ଦା ସନ୍ଧାନ ପାଇ ଖୋଳୁ ଖୋଳୁ ବହୁତ ଗଭୀରକୁ ଗାତ ଖୋଳିଲା । ହଠାତ୍ ତାର ଖଣତିମୂନ ଏକ ପଥରରେ ବାଜିଯିବାରୁ ଶବ୍ଦ ହେଲା ଓ କିଛି ସମୟ ପରେ ସେଥିରୁ ରକ୍ତସ୍ରାବ ହେଲା । ସେ ଭୟ ପାଇ ଗାଁକୁ ଫେରିଯାଇ ଲୋକମାନଙ୍କୁ କହିଲା । ଗାଁର ମୁଖିଆ ବି ଘଟଣା ଜାଣିଲେ ଓ ଆଶ୍ଚର୍ଯ୍ୟ ହେଲେ । ସେଦିନ ରାତିରେ ତାଙ୍କୁ ସ୍ୱପ୍ନାଦେଶ ହେଲାଯେ, ଶିବ ସେଠାରେ ଲିଙ୍ଗରୂପରେ ଆର୍ବିଭାବ ହୋଇଛନ୍ତି ଓ ତାଙ୍କର ଯଥାବିଧି ପୂଜାର୍ଚ୍ଚନା କରିବା ବ୍ୟବସ୍ଥା ହେବା ଉଚିତ୍ । ପରଦିନ ସମସ୍ତ ଗ୍ରାବବାସୀଙ୍କ ଉତ୍ସାହ ଓ ସହାୟତାରେ ଲିଙ୍ଗଙ୍କୁ ପ୍ରତିଷ୍ଠା କରାଯାଇ ପୂଜାର୍ଚ୍ଚନା ଆରମ୍ଭ ହେଲା । ସେ କନ୍ୟାର ନାମ ଅନୁସାରେ ଠାକୁରଙ୍କ ନାମ ଦୂତୀକେଶ୍ୱର ରଖାଗଲା ।

ସୂର୍ଯ୍ୟମଣି ଦୂତୀକେଶ୍ୱରଙ୍କ ପରମ ଭକ୍ତ ହୋଇଗଲେ । କିଛିଦିନ ଅନ୍ତେ, ଦିନେ ହଠାତ୍ ନିକଟସ୍ଥ ହରିପୁର ଗାଁର ସୋହାଗୀ ନାମକ ମାଳି କନ୍ୟା ସହ ତାଙ୍କର

ଭେଟ ହେଲା । ତାର ସୌନ୍ଦର୍ଯ୍ୟରେ ବିମୋହିତ ହୋଇ ଦୂତୀକେଶ୍ୱର ଲିଙ୍ଗ ସମ୍ମୁଖରେ ଗାନ୍ଧର୍ବ ରୀତିରେ ସେ କନ୍ୟାକୁ ବିବାହ କଲେ । କିନ୍ତୁ ସାନଭାଇ ଚନ୍ଦ୍ରମଣି କନ୍ୟା ନିଜଜାତିର ହୋଇନଥିବାରୁ ବିବାହକୁ ଗ୍ରହଣ କରି ନପାରି ବଡଭାଇଙ୍କ ପ୍ରତି ବିମୁଖ ହୋଇ ଗୁନାମାଟି ଛାଡି ଘୁମୁଷର (ଆଠଗଡ) ଚାଲିଗଲେ । ଯଦିଓ ସାନଭାଇର ମତକୁ ସମ୍ମାନ ଦେଲେ କିନ୍ତୁ ସୂର୍ଯ୍ୟମଣି ବିବାହ କରିବାପରେ ନିଜ ନିଷ୍ପତ୍ତିକୁ ବଦଳାଇ ପାରିନଥିଲେ । ଭାଇର ଅନୁପସ୍ଥିତିରେ ସୂର୍ଯ୍ୟମଣି ଦୁଃଖ ଅନୁଭବ କଲେ ସତ, କିନ୍ତୁ ନିଜର ଅଭିପ୍ରାୟ ସାଧନରେ ଧ୍ୟାନ ଦେଲେ । ଅବଶ୍ୟ ଗୁନାମାଟି ପ୍ରତି ଆଉ ଅଧିକ ଆକର୍ଷଣ ନ ରଖି ନିଜପାଇଁ ପ୍ରକୃଷ୍ଟ ସ୍ଥାନ ଅନ୍ୱେଷଣରେ ପ୍ରୟାସ ଜାରି ରଖିଲେ ।

ଇତ୍ୟବସରରେ, ହରିପୁରର ଢୁଙ୍କା ରଣା ନାମକ ଜନୈକ ଧାର୍ମିକ ବ୍ୟକ୍ତି ତାଙ୍କୁ ସୂଚନା ଦେବା ସହ ଗୁହାରୀ କଲେ ଯେ, ଗଡତିଆ ବଂଶର ସାତ ଭାଇ ସେ ଗାଁରେ ଲୋକମାନଙ୍କ ପ୍ରତି ପ୍ରବଳ ଅତ୍ୟାଚାର କରୁଛନ୍ତି । ସୂର୍ଯ୍ୟମଣି ଢୁଙ୍କାରଣାଙ୍କ ସହ ମିତ୍ରତା କରି ସେ ସାତ ଭାଇଙ୍କୁ ଆକ୍ରମଣ କଲେ ଓ ସେମାନଙ୍କୁ ହରାଇ ନିଜ ସୈନ୍ୟବଳରେ ସାମିଲ କରିବା ସହ ସେମାନଙ୍କୁ ଅତ୍ୟାଚାରରୁ ନିବୃତ୍ତ ହେବାକୁ ପରାମର୍ଶ ଦେଲେ । ତା'ପରେ ସେ ଗଡକୁ ଢୁଙ୍କାରଣାଙ୍କୁ ହସ୍ତାନ୍ତର କରି ନୂତନ ଗଡ ସନ୍ଧାନରେ ଚାଲିଲେ । ଶୁଳିଆ ପର୍ବତର ପାଦଦେଶରେ ପହଞ୍ଚିବା ପରେ, ସେ ଶସ୍ୟଶ୍ୟାମଳାଘେରା ଅଞ୍ଚଳ ଦେଖି ବିମୁଗ୍ଧ ହେଲେ ଓ ରାତ୍ରିଯାପନ ପାଇଁ ଉପଯୁକ୍ତ ସ୍ଥାନ ଭାବି ତମ୍ବୁ ଟାଣିଲେ । ସନ୍ଧ୍ୟା ଆଗତ ପ୍ରାୟ; ଦେଖିଲେ, ଏକ ଅନିନ୍ଦ୍ୟ ସୁନ୍ଦରୀ ଗର୍ଭବତୀ ନାରୀ ମୁଣ୍ଡ ଓ କାଖରେ କଳସୀ ଧରି ବୋଧହୁଏ ଜଳ ଆଣିବାକୁ ଝରଣାକୁ ଯାଉଛନ୍ତି । ତାଙ୍କ ଫେରିବା ବାଟକୁ ସୂର୍ଯ୍ୟମଣି ସିଂହ ଚାହିଁ ରହିଲେ । ହଠାତ୍ ତାଙ୍କ ଦୃଷ୍ଟି ପଡିଲା ଯେ, ସେ ନାରୀ କଳସୀ ଧରି ନାହାନ୍ତି କିନ୍ତୁ ତାଙ୍କ କାଖରେ ଏକ ଶିଶୁ କନ୍ୟା ଅଛି । ଡାହାଣ ହାତକୁ ଧରି ଏକ ଶିଶୁ ପୁତ୍ର ମା ସାଙ୍ଗରେ ଚାଲିଚାଲି ଆସୁଛି । ସେ ଆଶ୍ଚର୍ଯ୍ୟ ହେଲେ । କାରଣ ସଦ୍ୟ ପ୍ରସବିତ ଶିଶୁ ଚାଲିବ କିପରି ? ସିଏ ଦେବୀ ନା ଦାନବୀ । ଏପରି ଅନେକ ପ୍ରଶ୍ନ ମନରେ ଆସିଲା । ତେଣୁ ନାରୀଙ୍କର ସମ୍ମୁଖକୁ ଯାଇ ରହସ୍ୟ ଉନ୍ମୋଚନ କରିବା ପାଇଁ ଅନୁରୋଧ କଲେ । ନାରୀଟି ନିଜକୁ ଅଞ୍ଚଳର ଅଧିଷ୍ଠାତ୍ରୀ ଦେବୀ (ବାଉରୀ ଠାକୁରାଣୀ) ପରିଚୟ ଦେଇ ସୂର୍ଯ୍ୟମଣିଙ୍କୁ କହିଲେ, ତୁମ ଧ୍ୟାନ ଆକର୍ଷଣ କରିବା ପାଇଁ ମୁଁ ଏ

ମାୟା ରଚନା କରିଥିଲି । ଏବେ ମୋ କଥା ଶୁଣ । ତୁମେ ମୋର ଗଣ୍ଡିରୁ ମୁଣ୍ଡକୁ ହାଣି ଅଲଗା କର ଓ ତାହାକୁ ଏଇ ରଳବ ଗାଁରେ ପୋତି ମୋର ପୂଜା ଆରାଧନା କର । ତୁମେ ଏଠାରେ ରାଜତ୍ୱ କରି ରହିବ । ବହୁ ଧନ ସମ୍ପଦର ଅଧିକାରୀ ହେବ । ମୁଁ ତୁମକୁ ଓ ତୁମ ଗଡକୁ ସୁରକ୍ଷା ଦେବୀ । କିନ୍ତୁ ସୂର୍ଯ୍ୟମଣି ନାରୀ ହତ୍ୟା ପାପ ଲାଗିବା ଭୟରେ ସେ କାମ କରିବାକୁ କୁଣ୍ଠାବୋଧ କଲେ । ହଠାତ୍ ଦୁଇ ଶିଶୁ ଅନ୍ତର୍ଦ୍ଧ୍ୟାନ ହୋଇଗଲେ, ନାରୀ ବିକଟାଳ ବ୍ୟାଘ୍ର ରୂପ ନେଇ ଭୟଙ୍କର ଦେଖାଗଲେ । ସୂର୍ଯ୍ୟମଣି ନିଜ ତରବାରୀରେ ସେ ବିକଟାଳ ଶରୀରର ଶିର ଛେଦନ କରି ଏକ ଗାତରେ ପୋତି ଚିହ୍ନ ସ୍ୱରୂପ ଏକ କୁଦ ନିର୍ମାଣ କଲେ । ତା'ପରେ ରଳବ ଗ୍ରାମକୁ ନିଜ କବଳକୁ ଆଣିବାପାଇଁ ଚାଲିଲେ । ସେ ବିନା ଯୁଦ୍ଧରେ ରଳବ ଦଖଲ କଲେ । ପରବର୍ତ୍ତୀ ପର୍ଯ୍ୟାୟରେ ଗୁନାମାଟି ପରିତ୍ୟାଗ କରି ରଳବରେ ନିଜ ଗଡ ନିର୍ମାଣ କଲେ । ଅବଶ୍ୟ ଗୁନାମାଟିର ପ୍ରଜା ମାନଙ୍କର ସ୍ନେହ ସେ ଭୁଲିପାରିଲେ ନାହିଁ । କିନ୍ତୁ ନିଜର କାୟା ବିସ୍ତାର ପାଇଁ ରଳବ ହିଁ ଉପଯୁକ୍ତ ସ୍ଥାନ ଭାବି ସେଠାକାର ଲୋକମାନଙ୍କୁ ସାନ୍ତ୍ୱନା ଦେବାସହ ଧନ ସମ୍ପତ୍ତି ବିତରଣ କରି ରଳବରେ ସେ ରାଜ୍ୟ ସ୍ଥାପନା କଲେ ।

## ବାଉରି ଠାକୁରାଣୀ

ସୂର୍ଯ୍ୟମଣି ସିଂହ ପୂର୍ବ ନିର୍ଦ୍ଧାରିତ ମାଟି କୁଦ ଉପରେ ମଣ୍ଡପ ନିର୍ମାଣ କରି ନର ମୁଣ୍ଡ ମାଳିନୀ, ଲହ ଲହ ଜିହ୍ୱା. ଘୋର ଦନ୍ତ ପାଟି, ଖର୍ପର ଧାରିଣୀ ବାଉରି ଠାକୁରାଣୀ ପ୍ରତିଷ୍ଠା କରି ହରି ପଣ୍ଡା ନାମକ ପୂଜକଙ୍କୁ ପୂଜା ପାଇଁ ନିୟୋଜିତ କଲେ । କିନ୍ତୁ ପୂଜକ ପ୍ରତିଦିନ ପୂଜା ନ କରି କେତେକ ନିର୍ଦ୍ଦିଷ୍ଟ ଦିନରେ ପୂଜା କରିବା କଥା ସୂର୍ଯ୍ୟମଣି ଶୁଣିବା ପରେ ପୂଜକକୁ କଠୋର ଦଣ୍ଡ ଦେବାକୁ ସ୍ଥିର କରି ବନ୍ଦୀ କଲେ । କିନ୍ତୁ ସ୍ୱପ୍ନାଦେଶପରେ ନିଜର ଭୁଲ ବୁଝିପାରି ପୂଜକଙ୍କୁ ମୁକ୍ତି ଦେବା ସହ କ୍ଷମା ଯାଚନା କରି ତାଙ୍କ ପ୍ରସ୍ତାବ ଅନୁଯାୟୀ, କେବଳ ଅମାବାସ୍ୟା, ପୂର୍ଣ୍ଣମୀ ଓ ସଂକ୍ରାନ୍ତି ଦିନରେ ପୂଜା ବିଧି କରିବାପାଇଁ ଅନୁମତି ପ୍ରଦାନ କଲେ ।

## ଗଡତିଆଙ୍କ ଜୁଲୁମ

ରଳବ ଗଡର ଚାରିପାଖରେ ଗଡତିଆଙ୍କ ପ୍ରଭାବ ଥିଲା । ସେମାନେ ଚାଷୀ ମୂଲିଆ ଖଟିଖିଆମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରୁଥିଲେ । ଇଚ୍ଛା

ଅନୁସାରେ କର ନିର୍ଦ୍ଧାରଣ କରି ଚାଷଜମି ଚାଷୀଙ୍କୁ ଦେଉଥିଲେ । କର ନ ଦେଇ ପାରିଲେ ଚାବୁକ, ବେତ୍ରାଘାତ ଆଦି ଶାରୀରିକ ପିଡ଼ା ଦେଇ ଗୋଲାମୀ ଖଟାଉ ଥିଲେ । ଲୋକଙ୍କୁ ବେଠି ଖଟାଇ କାମ କରାଉ ଥିଲେ । ନାରୀ ନିର୍ଯ୍ୟାତନା ମଧ୍ୟ କରୁଥିଲେ । ନିଜର ମାନସିକ ପୁରଣ ପାଇଁ ଭୈରବୀ ଚଣ୍ଡୀଙ୍କ ପୀଠରେ ନରବଳି ଦେଉଥିଲେ । ତେଣୁ ପ୍ରଜାମାନେ ଭୟ ଓ ଆତଙ୍କରେ ଦିନ କାଟୁଥିଲେ । ଏକଦା ବଳିପାଇଁ ବନ୍ଦି ହୋଇଥିବା ଏକ ନିରୀହ ଲୋକ କୌଣସି ମତେ ଖସି ଯାଇ ରାଜାଙ୍କ ସମ୍ମୁଖରେ ଗଡତିଆଙ୍କର ଦୌରାତ୍ମ୍ୟ ବର୍ଣ୍ଣନା କଲା ।

ଅନ୍ୟ ଏକ ଘଟଣା କ୍ରମରେ, ବାଙ୍କତରା ଗ୍ରାମର ବାସବ ନାମକ ଏକ ମାଳିର ସୁନ୍ଦରୀ କନ୍ୟାକୁ କାମ ଲୋଭରେ ତାର ପିତାମାତାଙ୍କ ସମ୍ମୁଖରେ ଗଡତିଆ ହରଣ କରି ନେବାପରେ ସେ ଦମ୍ପତି ଅସହାୟ ଅବସ୍ଥାରେ ଗାଁ ଛାଡି ଜଙ୍ଗଲକୁ ପଳାଇଗଲେ ଓ ରଳବ ଯାଇ ସୂର୍ଯ୍ୟମଣିଙ୍କୁ ନିଜ ଦୁଃଖ ବର୍ଣ୍ଣନା କରିବା ସହ ଗଡତିଆ ମାନଙ୍କର ଦୌରାତ୍ମ୍ୟ କଥା ଅବଗତ କରାଇଲେ । ରାଜା ମାଳିଙ୍କଠାରୁ ସମସ୍ତ ବିଷୟ ଶୁଣିବା ପରେ ବିସ୍ମିତ ହେଲେ ଓ ପୀଡ଼ିତ ପ୍ରଜାମାନଙ୍କୁ ଗଡତିଆମାନଙ୍କ କବଳରୁ ଉଦ୍ଧାର କରିବା ପାଇଁ ପ୍ରତିଜ୍ଞାବଦ୍ଧ ହେଲେ । ସୂର୍ଯ୍ୟମଣି ଗଡତିଆ ମାନଙ୍କୁ ଦମନ କରି କରପୀଠ ଦୁର୍ଗ ନିଜ ଦଖଲକୁ ଆଣିଲେ । ସୂର୍ଯ୍ୟମଣିଙ୍କ ପ୍ରଜାବତ୍ସଳ ନୀତିକୁ ପ୍ରଜାମାନେ ଭୁରିଭୁରି ପ୍ରଶଂସା କଲେ । ସେହି ଘଟଣା ପରଠାରୁ କରପୀଠର ମାହାତ୍ମ୍ୟ ସର୍ବତ୍ର ପ୍ରଚାରିତ ହେଲା ଓ କାଳକାଳକୁ ଚର୍ଚ୍ଚାରେ ବି ରହିଲା ।

କରପୀଠ ଏକ ପବିତ୍ର ତୀର୍ଥଭୂମି । ତ୍ରେତୟା ଯୁଗରେ ଏ ଅଞ୍ଚଳର ଘନ ବନାନୀ ଏକଦା ବିସ୍ତୃତ ଚନ୍ଦନ ବନରେ ଭରି ରହିଥିଲା ଓ ଅତ୍ରିମୁନି ପତ୍ନୀ ଅନସୂୟାଙ୍କ ସହ କଳକଳ ନାଦିନୀ ପୁଷ୍ପବତୀ ଝରଣା କୂଳରେ ନିଜର ଆଶ୍ରମ ସ୍ଥାପନା କରିଥିଲେ । ପ୍ରଭୁ ରାମଚନ୍ଦ୍ର ଓ ଦେବୀ ସୀତା ଭାଇ ଲକ୍ଷ୍ମଣଙ୍କ ସହ ଦଣ୍ଡକାରଣ୍ୟ ଯିବା ସମୟରେ ମୁନିଙ୍କ ଆଶ୍ରମରେ କଛିଦିନ ବିତାଇଥିଲେ ଓ ମୁନିଙ୍କ ପତ୍ନୀ ସତୀ ଅନସୂୟା ତାଙ୍କର ଅମ୍ଲାନ ବସ୍ତ୍ର ସୀତାଙ୍କୁ ଉପହାର ଦେଇଥିଲେ । ସୂର୍ଯ୍ୟମଣି ସେ ପବିତ୍ରଭୂମି ଦର୍ଶନ କରି ନିଜକୁ ଧନ୍ୟ ମନେକଲେ ।

ରାଜ୍ୟର ଉନ୍ନତି ପାଇଁ ସୂର୍ଯ୍ୟମଣି ବହୁ ଜନହିତକର କାମ କରି ପ୍ରଶଂସାର ପାତ୍ର ହେଲେ । କୃଷିର ଉନ୍ନତି ପାଇଁ ଯୋଜନାମାନ କରି ଲୋକମାନଙ୍କ ମନରେ ଶାନ୍ତି ଓ ମୈତ୍ରୀଭାବ ପ୍ରଚାର କରାଇଲେ । ଦେବାଦେବୀଙ୍କ ଉପାସନା ପାଇଁ ମଧ୍ୟ

ପ୍ରଜାମାନଙ୍କୁ ପ୍ରେରଣା ଦେବା ସହ ଚେତନା ଜାଗ୍ରତ କରାଇଲେ । ସେବାୟତମାନଙ୍କୁ ନିଯୁକ୍ତି ଦେଇ ନୀତି କାନ୍ତି ପାଇଁ ଜମି ଖଂଜିଲେ । ସମୟ ଗଡିଚାଲିଲା । ପତ୍ନୀ ସୋହାଗୀଙ୍କ ଅକାଳ ମୃତ୍ୟୁରେ ଯଦିଓ ସେ ମର୍ମାହତ ହୋଇ କିଛି ଦିନ ପାଇଁ ଭାଙ୍ଗିପଡିଲେ ପରେ କିନ୍ତୁ ରାଜ ପରିଷଦଙ୍କ ଅନୁରୋଧ ଓ ପରାମର୍ଶ କ୍ରମେ କୁଳ ରକ୍ଷା ପାଇଁ ଏକ କ୍ଷତ୍ରୀୟ କନ୍ୟା ସହ ତାଙ୍କର ବିବାହ ସମ୍ପର୍ଣ୍ଣ ହେଲା । ବିବାହର ଏକବର୍ଷ ପରେ ଏକ ପୁତ୍ର ସନ୍ତାନର ଅଧିକାରୀ ହେଲେ । ପୁତ୍ରର ନାମ କରଣ କରାଗଲା । ତାଙ୍କ ନାମ ଜୟ ଗୋବିନ୍ଦ । ୨୮ ବର୍ଷ ରାଜତ୍ୱ କରିବା ପରେ ଜୟଗୋବିନ୍ଦ ପ୍ରାପ୍ତ ବୟସ୍କ ହେବା ପରେ ସୂର୍ଯ୍ୟମଣି ୧୨୮୩ ମସିହାରେ ତାଙ୍କୁ ରାଜ୍ୟଭାର ହସ୍ତାନ୍ତର କରି ନିଜେ ଧର୍ମ ଚର୍ଚ୍ଚା ଓ ଈଶ୍ୱର ପୂଜାରେ ସମୟ ବିତାଇଲେ । କିଛିବର୍ଷ ଅନ୍ତେ ପବିତ୍ର ରାସପୂର୍ଣ୍ଣିମା ଦିନ ତାଙ୍କର ଦେହବସାନ ହେଲା ।

ଜୟଗୋବିନ୍ଦ ପିତାଙ୍କ ପରି ପ୍ରବଳ ପ୍ରତାପୀ ଓ ସାମ୍ରାଜ୍ୟ ପିପାଷୁ ଥିଲେ । ମହିପୁର ଡମ ଗଡତିଆଙ୍କୁ ହରାଇ ବନ୍ଦି କଲେ । ପୂର୍ବରେ ଖୋର୍ଦ୍ଧାରାଜ୍ୟ ଅନ୍ତର୍ଗତ ଇଟାମାଟି ଓ ପଣ୍ଡୁସର ଅଧିକାର କରିବା ଅଭିପ୍ରାୟରେ ସୈନ୍ୟ ବଳ ନେଇ ଅଭିଯାନ କରିବା ସମୟରେ ଗଙ୍ଗବଂଶ ଖୋର୍ଦ୍ଧାରାଜାଙ୍କ ସୈନ୍ୟ ପଥରୋଧ କଲେ । କିନ୍ତୁ ଜୟଗୋବିନ୍ଦଙ୍କ ଯୁଦ୍ଧକୌଶଳ ଆଗରେ ସେମାନେ ପଛଘୁଞ୍ଚା ଦେବାକୁ ବାଧ୍ୟହେଲେ । ରାଜା ଜୟଗୋବିନ୍ଦଙ୍କ ପରାକ୍ରମ ଜାଣି ତାଙ୍କୁ ପଣ୍ଡୁସର ଓ ଇଟାମାଟି ହସ୍ତାନ୍ତର କରିବା ପରେ ରଳବର ସୀମା କୁସୁମି ଠାରୁ ଡାହୁକା ପର୍ଯ୍ୟନ୍ତ ବିସ୍ତାରିତ ହେଲା । ସେହି କ୍ରମରେ, ଦକ୍ଷିଣରେ ରଣପୁର ରାଜ୍ୟରୁ ଲାଠିପଡା ଓ ଶରଣକୁଳ ଅଧିକାର କରି ସୀମାରେଖା ବର୍ଦ୍ଧିତ କଲେ । ଶରଣକୁଳ ଅଧିକାର କରିବା ପରେ ଲଡୁକେଶ ମହେଶପୀଠର ମାହାତ୍ମ୍ୟ ଜାଣି ଶିବଙ୍କର ପରମ ଭକ୍ତ ହେଲେ ।

ରଳବ ରାଜ୍ୟର ନବମ ରାଜା ବାଘେଲା ସିଂହ ଏକଦା ଶିକାରରେ ଯିବା ସମୟରେ ରକ୍ଷୀ ପର୍ବତଠାରେ ଏକ ଅଦ୍ଭୁତ ଦୃଶ୍ୟ ଦେଖିଲେ । ଖାଦ୍ୟ ଖାଦକ (ଶଶା- ଶ୍ୱାନ) ପିଠିରେ ବସିଅଛି । ନିକଟସ୍ଥ ଡାହୁକା ନଦୀ କୂଳରେ ଅବସ୍ଥାନ କରିଥିବା ନାଥ ଧର୍ମ ସଂପ୍ରଦାୟର ଯୋଗୀଙ୍କ ଆଶ୍ରମରେ ପ୍ରବେଶ କରି ତାଙ୍କଠାରୁ ଜାଣିଲେଯେ, ସେ ଅଞ୍ଚଳ ଏକ ପବିତ୍ର ଧର୍ମଭୂମି । ଦ୍ୱାପର ଯୁଗରେ ପାଣ୍ଡବମାନେ ଅଜ୍ଞାତ ବାସରେ ଥିବା ସମୟରେ ଗାଲ ରାକ୍ଷସକୁ ବଧ କରି ସେଇ ରକ୍ଷାଚଳ ପର୍ବତରେ ବାସ କରିଥିଲେ । ଭୀମ ସୂପକାର ହେବାର ସ୍ମୃତି ସ୍ୱରୂପ, ଏବେ ମଧ୍ୟ

ସେ ସ୍ଥାନରେ ଭୀମ ଖନ୍ଦା ରହିଛି । ପ୍ରକାଶ ଥାଉକି, ରକ୍ଷାଚଳ ପର୍ବତ ପୂଣ୍ୟଭୂମି ଭାରତର ସପ୍ତଶଇଳ ମଧ୍ୟରେ ଏକ । ସେହିକ୍ରମେ ନିକଟସ୍ଥ ବଳରାମ ପର୍ବତ ମଧ୍ୟ ଜାମ୍ବବାନଙ୍କ ଗଡ ଥିଲା । କୃଷ୍ଣ ଓ ବଳରାମ ସ୍ୟମନ୍ତକ ମଣି ଉଦ୍ଧାର ପାଇଁ ଜାମ୍ବବାନ ସହ ଯୁଦ୍ଧ କରିଥିବାରୁ ଲୋକକଥା ଅନୁକ୍ରମେ ପର୍ବତର ନାମ ବଳରାମ ହେଲା । ରାଜା ସେ ସ୍ଥାନର ମହତ୍ୱ ଉପଲବ୍ଧି କଲେ ଓ ଦିନେ ରାତିରେ ନିଜ ବାଘେଲ ବଂଶର ଇଷ୍ଟଦେବୀଙ୍କ ସ୍ୱପ୍ନାଦେଶ ପାଇ ରକ୍ଷୀ ଓ ବଳରାମ ପାଦଦେଶରେ ଗଡ ନିର୍ମାଣ କରି ରଳବରୁ ରାଜଧାନୀ ନୟାଗଡକୁ ସ୍ଥାନାନ୍ତର ହେଲା । (ବାଘୁଆ ନୟାଗଡ) ।

ନୟାଗଡ ଗଡଜାତର ଦ୍ୱାଦଶ ରାଜା ହେଉଛନ୍ତି ଶ୍ରଯୁକ୍ତ ରଘୁନାଥ ସିଂହ (୧୫୬୫ ମସିହା) । ସେ ସମୟରେ ଉତ୍କଳର ରାଜା ଶ୍ରୀଶ୍ରୀଶ୍ରୀ ମୁକୁନ୍ଦ ଦେବ ଓ ଗଡମୂଖ୍ୟ ଶ୍ରୀଯୁକ୍ତ ରାମଚନ୍ଦ୍ର ଭଞ୍ଜ । ରାମଚନ୍ଦ୍ର ଭଞ୍ଜ ମୁକୁନ୍ଦ ଦେବଙ୍କୁ ପ୍ରତାରଣା କରି ଯୁଦ୍ଧରେ ହରାଇଲା ଓ ରାଜ୍ୟ ଅଧିଗ୍ରହଣ କଲା । କଳାପାହାଡ ଆକ୍ରମଣ ଓ ଇଂରେଜଙ୍କ ଅଧିକାରରେ ଉତ୍କଳ ଏକ ଘଡିସନ୍ଧି ମୁହୂର୍ତ୍ତରେ ଗତି କରୁଥାଏ ।


ରାଜା ୮ କୃଷ୍ଣଚନ୍ଦ୍ର ସିଂହ ମାନଧାତା

ନୟାଗଡ ରାଜା ପୁରୀ ରାଜାଙ୍କ କବଳରୁ ବାହାରି ଆସି ନିଜକୁ ସ୍ୱତନ୍ତ୍ର ଘୋଷଣା କଲେ ଓ ରାଜ୍ୟ ବିସ୍ତାର କରିବା ଅଭିପ୍ରାୟରେ ରଣପୁର, ଓଡଗାଁ (ଶରଣକୁଳ), ବାଉଁସିଆପଡା, ଘୁମୁସର, ସୁନାମୁହିଁ, ଦଶପଲ୍ଲା (ବଉଦ ଗଡଜାତରୁ) ଆଦି ନଅଟି ଗଡ ଅଧିକାର କରି ନୟାଗଡ ରାଜ୍ୟ ଗଢିଲେ । ଏହି କ୍ରମରେ ତାଙ୍କର ଅନ୍ୟ ଏକ ଦାୟାଦ ଶ୍ରୀ ବିନାୟକ ସିଂହଙ୍କ ଶାସନ କାଳରେ କଜଳାଇପଲ୍ଲୀ ଗ୍ରାମ ସ୍ଥାପନା ହୋଇଥିଲା । ପରବର୍ତ୍ତୀ କାଳରେ ସେ ବଂଶର ରାଜା କୃଷ୍ଣଚନ୍ଦ୍ର ସିଂହ ମାନଧାତା ବିଧାନସଭା ସଦସ୍ୟ ପଦ ପାଇଁ ନିର୍ବାଚନରେ ପ୍ରାର୍ଥୀହୋଇ ପ୍ରଚାରରେ ଆମ ଗାଁକୁ ଆସିଥିବା କଥା ମୋର ମନେ ଅଛି ।

## ନୟାଗଡ଼ ଗଡଜାତର ରାଜ ବଂଶାବଳୀ

ସୂର୍ଯ୍ୟମଣି ସିଂହ – (୧୨୫୫-୧୨୮୩), ଜୟଗୋବିନ୍ଦ ସିଂହ – (୧୨୮୩-୧୩୧୩), ଧେନୁକ ସିଂହ – (୧୩୧୩-୧୩୩୫), ସିଂଘଲା ସିଂହ – (୧୩୩୫- ୧୩୪୯), ହରିହର ସିଂହ –( ୧୩୪୯-୧୩୯୦), ଭଦ୍ର ସିଂହ –(୧୩୯୦-୧୪୨୦), ଗନ୍ଧ ସିଂହ – (୧୪୨୦- ୧୪୫୦), ଘନଶ୍ୟାମ ସିଂହ – (୧୪୫୦-୧୪୮୦), ବାଘା ସିଂହ –(୧୪୮୦-୧୫୧୦). ରଘୁନାଥ ସିଂହ-୧୫୬୫, ଗୋକୁଳ ସିଂହ-୧୬୭୮, ବିନାୟକ ସିଂହ (୧୭୯୩-୧୮୨୩)

### ନୟାଗଡ଼ ଗଡ଼ଜାତ ବିଷୟରେ ଅନ୍ୟ କେତେକ ତଥ୍ୟ :

ଗୁନା ମାଟି ଗ୍ରାମରେ ବ୍ୟାଘ୍ରର ବଧ କରି ପ୍ରଥମ ଗଡ଼ ସ୍ଥାପନା କରିଥିବାରୁ, ନୟାଗଡ଼, ରାଜ୍ୟ ସ୍ଥାପନା ହୋବା ପରେ, ସେ ବଂଶର ରାଜାମାନଙ୍କୁ ବଘେଲ୍ ବଂଶୀୟ ବୋଲାଇଥିଲେ ଓ ରାଜ୍ୟର ଚିହ୍ନ, ବାଘମୁଣ୍ଡ ରଖଯାଇଥିଲା ।

ତଥ୍ୟ ; ଶ୍ରୀ ଶ୍ରୀ ଲଡୁକେଶ ମନ୍ଦିର ଓ ଶୈବତତ୍ତ୍ୱ – ଶ୍ରୀ ଯମେଶ୍ୱର ନନ୍ଦ

ଲଡୁବାବା ବିଳାସ – ଶ୍ରୀ ସୁରେଶ ଚନ୍ଦ୍ର ବରାଡ

ନୟାଗଡ ପୁରାଣ – ହରିଶ ଗୀତିକଞ୍ଚ ବିରଚିତ (ଦର୍ପଣ ପବ୍ଲିକେଶନ, ନୟାଗଡ)



# ଅଖ୍ୟାତ ରୁ ପ୍ରଖ୍ୟାତ

ଆମ ଗାଁ ନାଁ କଜଳାଇପଲ୍ଲୀ ଶାସନ । କଜଳାଇପଲ୍ଲୀ କହିଲେ କେହି ଜାଣିବେ ନାହିଁ । ଓଡିଶାର ପ୍ରସିଦ୍ଧ ଶୈବପୀଠ ମଧ୍ୟରେ ଶରଣକୁଳସ୍ଥ ଲଡୁବାବାପୀଠ ଅନ୍ୟତମ । ଏଇ ଶରଣକୁଳ ହିଁ ଆମଗାଁ ପରିଚୟର ପ୍ରଥମ ସୋପାନ । ଏଇ ଶରଣକୁଳ ଥାନା ଅଧୀନରେ ଆମ ଗାଁ । ଶରଣକୁଳଠାରୁ ପାଞ୍ଚ ଛଅ କିଲୋମିଟର ଦୂରରେ ପୂର୍ବ ଦକ୍ଷିଣ ଦିଗରେ ଅବସ୍ଥିତି ଏଇ ଗାଁଟି ବଣ ଜଙ୍ଗଲ ବେଷ୍ଟିତ । ଯେଉଁ ସମୟର ତଥ୍ୟ ଉପସ୍ଥାପିତ କରାଯାଉଅଛି, ସେ ସମୟରେ ଆମ ଗାଁକୁ ରାସ୍ତା ନଥିଲା । ଦୁଇଟି ନଦୀ, ଗୋଟିଏ ନାଳ. ବିଲ ହୁଡା ଦେଇ ଯିବାକୁ ହେଉଥିଲା ।

ବାହ୍ୟ ଜଗତରୁ ବିଛିନ୍ନ ଆମ ଗାଁ ନାଁ ଶୁଣିଲେ ଯଦିଓ ଲୋକେ ନାକ ଟେକନ୍ତି, କିନ୍ତୁ କେହି ଅଚିହ୍ନା ବ୍ୟକ୍ତି ଯେବେ ଅନିଚ୍ଛାସତ୍ୱେ ବି ଏ ଗାଁରେ ଥରେ ପାଦପକାନ୍ତି, ତେବେ ତାର ଦକ୍ଷିଣପାର୍ଶ୍ୱବେଷ୍ଟିତ ଜଂଗଲ ଓ ସୌନ୍ଦର୍ଯ୍ୟକୁ ଉପଭୋଗ କରି ବିମୁଗ୍ଧହେବା ସହ ନିଜ ଭ୍ରାନ୍ତଧାରଣାକୁ ମନରୁ ଅପସରି ଦିଅନ୍ତି । ଗାଁକୁ ଆସିବା ନିଶ୍ଚିତ କଷ୍ଟଦାୟକ । ପାଞ୍ଚ ଛଅ କିଲୋମିଟର ରାସ୍ତା ପାଦରେ ଚାଲି, ବିଲ, ହୁଡା, ନଦୀ, ନାଳ ଆଦି ଅତିକ୍ରମ କରିବାପରେ ଯେଉଁ କଷ୍ଟ ଓ ବିରକ୍ତି ଲାଗିବ, ତାହା ସ୍ୱାଭାବିକ ମଧ୍ୟ । ବର୍ଷାଦିନ କଥା ତ ଅବର୍ଣ୍ଣନୀୟ । ଅକଥନୀୟ ଯନ୍ତଣା ଓ ଶାରୀରିକ ପୀଡା ।

ଭିକାରିପଡା ଡେଇଁଗଲେ, ଅଙ୍କାବଙ୍କା ହିଡ ରାସ୍ତା ଉପରେ ସତର୍କରେ ନ ଚାଲିଲେ କେତେବେଳେଯେ ବିଲରେ କି ନାଳରେ ପଡିବ ତାର ଠିକଣା ନାହିଁ, ସେଥିରେ ପୁଣି ଦୁଇଟି ନଦୀ ଓ ଗୋଟିଏ ନାଳ ପାରହେବାକୁ ପଡିବ । ଶିଖରପୁର ଗାଁ ମୁଣ୍ଡ ନର୍ଦ୍ଦମା କଥା ମନେପଡିଲେ କଥା ସରିଲା । ବଢିବେଳେ ତ ଲୁଗା ପାଲଟିଯିବାକୁ ହେବ । ସେସବୁ ଆମପାଇଁ ଅଭ୍ୟାସଗତ ହୋଇ ଯାଇଥାଏ, କଣ କରିବୁ, ଜନ୍ମ ମାଟିର ଆକର୍ଷଣ ।

ତେବେ, ଅତିଥି ଆଗନ୍ତୁକମାନେ ଥରେ ଗାଁରେ ପହଞ୍ଚିଯିବା ପରେ କେବଳ ଯେ ଯନ୍ତ୍ରଣାର ଅନ୍ତ ଘଟେ ତା ନୁହେଁ, ସେମାନଙ୍କ ମନର ଭାବ ସମ୍ପୂର୍ଣ୍ଣ ବଦଳିଯାଏ । ଗାଁକୁ ପ୍ରବେଶ କରିବାର କିଛି ବାଟ ପୂର୍ବରୁ ଉତ୍ତମ ପରିବେଶଯୁକ୍ତ ଉଚ୍ଚ ଇଂରାଜୀ ବିଦ୍ୟାଳୟ ଓ ଖେଳପଡିଆ ଦେଖି କିଞ୍ଚିତ ଆଶ୍ୱସ୍ତି ଅନୁଭବ କରିଥାନ୍ତି । ଗାଁରେ ପ୍ରବେଶ କରୁ କରୁ ଗୋଟିଏ ପୁରୁଣା କାଳର କୋଠାଘର ଦେଖି ପ୍ରଥମ ପ୍ରଶ୍ନ, ଏ ବିଲ୍ଡିଂ କାହାର ? ପାଠାଗାର ନାଁ ଶୁଣିବାପରେ ଚକ୍ଷୁ ବିସ୍ଫାରିତ ହେବା ସ୍ୱାଭାବିକ । ତାହା ପୁଣି ୧୯୩୫ ମସିହାରେ ପ୍ରତିଷ୍ଠିତ ? ତା'ପରେ ଚଉଡା ଦାଣ୍ଡ, ଦୁଇପାଖେ ନଡିଆ ଗଛର ଶୋଭା । ଦୁଇଟି ମଣ୍ଡପ, ଉଚ୍ଚ ପିଣ୍ଡା, କୋଠାଘର ନ ହେଲେବି ଘରଗୁଡିକ ସୁନ୍ଦର ଢଙ୍ଗରେ ତିଆରି । ଏପରି ମନୋମୁଗ୍ଧକର ପରିବେଶ ଦେଖିବାପରେ ଅତିଥିମାନଙ୍କର ପୂର୍ବ ଧାରଣା ପୁରା ବଦଳି ଯାଏ । ସ୍ୱତଃ ପ୍ରକାଶ ପାଏ, ନିବିଡ ଜଙ୍ଗଲବେଷ୍ଟିତ ଏକ ଅପନ୍ତରା ଅଞ୍ଚଳରେ ଏପରି ଏକ ଆଦର୍ଶ ଗ୍ରାମ ?

ଅତଥି ଓ ଆତିଥ୍ୟ, ଏ ଦୁଇ ଶବ୍ଦ ପରସ୍ପର ଅନୁପୂରକ । ଅତିଥି ସତ୍କାର ବିଷୟରେ କହିଲେ ନିଜ ବାଜା ନିଜେ ବଜାଇବା ସଦୃଶ୍ୟ । "ଅତିଥି ଦେବୋ ଭବ", ଏଇ ଉକ୍ତିର ଯଥାର୍ଥତା ପ୍ରତିପାଦନ କରିବାରେ ଆମ ଗାଁର ସଭିଏଁ ତତ୍ପର, ସିଏ ଯାହାର ବନ୍ଧୁ ହୁଅନ୍ତୁନା କାହିଁକି । ଅତିଥି ସତ୍କାରରେ ବିଭୋର ହୋଇ ଶାରୀରିକ ପୀଡା କିଛି ପରିମାଣରେ ଲାଘବ ଅନୁଭବ କରିବା ସ୍ୱାଭାବିକ, କିନ୍ତୁ ସାଙ୍ଗମେଳରେ ଜଙ୍ଗଲ ବୁଲିବାକୁ ଯାଇ ଯେଉଁ ଅନୁଭୂତି ଆଣନ୍ତି, ତାଙ୍କ ମନ ପୂରା ଉଲ୍ଲସିତ ହୋଇଯାଏ ।

ବେଲରଗଡି (ଆଦିବାସୀ ଗାଁ), ଉଛୋଇ ନାଗଝରେ ଆନିକଟ, ସାନହାଣ୍ଡି, ବଡହାଣ୍ଡି, ଓ ଶିମିଳିଝରେ ଜଳପ୍ରପାତ ଏବଂ ବଣ ପାହାଡଘେରା ମନୋମୁଗ୍ଧକର ପ୍ରାକୃତିକ ସୌନ୍ଦର୍ଯ୍ୟ ଦର୍ଶନପରେ ଖୁସିରେ ଆତ୍ମହରା ହୋଇଯାନ୍ତି । ପଙ୍କରେ ପଦ୍ମ, ନଡିଆରସର ସ୍ୱାଦ ଇତ୍ୟାଦି ଉଦାହରଣ ଉଦ୍ଧୃତ କରି ଗାଁର ଟେକ କହିବୁଲନ୍ତି ।

## ପ୍ରକୃତିରାଣୀର ଅପରୂପ ଶୋଭା

ପ୍ରକୃତି ରାଣୀର ଅପରୂପ ଶୋଭାକୁ ମନଭରି ଉପଭୋଗ କରିବାକୁ ହେଲେ ଆମ ଗାଁକୁ ଆସିବାକୁ ହେବ । ଯେଉଁମାନେ ଜୈବ ବିବିଧତା ଉପରେ ଆଗ୍ରହ

ରଖନ୍ତି, ସେମାନେ ଥରେ ଆମଗାଁକୁ ଆସିଲେ ତା'ର ପ୍ରାଚୁର୍ଯ୍ୟ ଓ ଜୈବ ବିବିଧତାର ଭଣ୍ଡାର ଦେଖିପାରିବେ । ନାନା ଜାତିର ଫୁଲ, ଫଳରେ ଭରା ସେ ଜଂଗଲ ଦେଖିଲେ ମନରେ ଅପ୍ରତିମ ଖୁସି ଆଣି ଦିଏ । ଆମେ ପିଲାମାନେ ସେ ସୌନ୍ଦର୍ଯ୍ୟ ଉପଭୋଗ କରିବା ସହ ବିଭିନ୍ନ ପ୍ରକାର କୋଳି ଯଥା - କଣ୍ଟେଇ କୋଳି, ଖିରିକୋଳି, ଲୁଣିକୋଳି, ଖଜୁରିକୋଳି ସଂଗ୍ରହ କରି ଆନନ୍ଦ ପାଉ।

ମୁଁ ଯେଉଁ ସମୟର କଥା ଉଲ୍ଲେଖ କରୁଚି, ସେସମୟରେ ଆମଗାଁକୁ ଆସିବାକୁ କୌଣସି ନିର୍ଦ୍ଦିଷ୍ଟ ରାସ୍ତା ନଥାଏ । ନାଳ ନଦୀ ବିଲମାଳ ଦେଇ ଆସିବାକୁ ହୁଏ । ଶରଣକୁଳର ଅବସ୍ଥିତି ବିଷୟରେ ସମସ୍ତେ ଅବଗତ ଥାଆନ୍ତି । କାରଣ ବହୁ ଆଗରୁ ଶୈବପୀଠ ଲଡୁବାବା ପ୍ରସିଦ୍ଧି ଲାଭକରି ରାଜ୍ୟ ମାନଚିତ୍ରରେ ସ୍ଥାନପାଇଅଛି । ତେଣୁ ଶରଣକୁଳ ଆସିବାରେ ଅସୁବିଧା ନଥାଏ । ସେଠାରୁ ଆମ ଗାଁ ବେଶିଦୂର ନୁହେଁ, କିନ୍ତୁ ଏଠାରେ ପହଞ୍ଚିବା ଏକ ଦୂରୁହ ବ୍ୟାପାର । କୋଶେ ବାଟ ପାଦରେ ଚାଲିଯିବା ପାଇଁ ଅତି କମ୍ ରେ ଦୁଇ ଘଣ୍ଟା ଲାଗିଯିବ । ବର୍ଷାଦିନ କଥା ନକହିଲେ ଭଲ । କାରଣ ଦି'ଟା ନଦୀ ନାଳ ଖାଲ ଖମା ପାରହେଇ ଯିବା ଅତୀବ କଷ୍ଟ । ସେଥିପାଇଁ ସଭିଏଁ କୁହନ୍ତି ସେ ଗାଁକୁ ଯମ ଯିବନି । ଏ ଅଞ୍ଚଳରେ ଅନ୍ୟ ଗାଁ ବି ଅଛି। କିନ୍ତୁ ସେସବୁ ଗାଁପ୍ରତି ଧ୍ୟାନ ନଥାଏ। ବଣଜଙ୍ଗଲ ଘେରା ଅଞ୍ଚଳ ହେଇଥିବାରୁ ଲୋକମାନଙ୍କର ଜୀବିକା ଚାଷ ଓ ତା ସହିତ ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ । ରାତିପାହିଲେ ନିଜ କର୍ମ ସଂସ୍ଥାନ ପାଇଁ ସମସ୍ତେ ଜଙ୍ଗଲମୁହାଁ, କାରଣ ଧାନ ବୁଣା କଟା ପାଇଁ ଯେତିକି ଶ୍ରମ କରିବା କଥା ସେତିକି ସରିଗଲେ, ବାକି ସମୟ ପଦା ଫସଲ ଓ କାଠ କାମ । କେବେ କେମିତି ଶରଣକୁଳ ଯିବାକୁ ପଡେ ସିନା । କିନ୍ତୁ ଆମ ଗାଁ ଲୋକଙ୍କର ଚାଲିଚଳଣୀ ଭିନ୍ନ । ବ୍ରାହ୍ମଣ ପରିବାର । ପିଲାମାନଙ୍କୁ ପାଠ ପଢାଇବା ମୂଳ ଲକ୍ଷ୍ୟ । ଆଖପାଖ ଗାଁରେ ବନ୍ଧୁ ବାନ୍ଧବ ରହୁଥିବାରୁ ସମ୍ପର୍କ ରଖିବା, ନୟାଗଡରେ ଜମିଜମା କାମ ଇତ୍ୟାଦି ଥାଏ । ତେଣୁ ଗମନାଗମନ ସମସ୍ୟା ଆମେ ବେଶୀ ଉପଲବ୍ଧି କରୁଥିଲୁ ।



# ଜୈବ ବିବିଧତା ଭରା ଚକାଆମ୍ବ ଜଂଗଲ

ଆମ ଅଞ୍ଚଳର ସୁବିଧା ଅସୁବିଧା ଯଥା ଶିକ୍ଷା, ସ୍ୱାସ୍ଥ୍ୟ, ଗମନାଗମନ ଆଦି ସମସ୍ୟା ପ୍ରତି ସରକାର ଯଦିଓ ଉଦାସୀନ ଥିଲେ, ଏ ଅଞ୍ଚଳର ଘନ ଜଙ୍ଗଲ ପ୍ରତି କିନ୍ତୁ ସରକାରଙ୍କ ତୀକ୍ଷ୍ଣଦୃଷ୍ଟି ଥିବା କଥା ବାରି ହେଉଥିଲା । କାରଣ, ପଞ୍ଚାୟତ ମହକୁମା ହୋଇବି ଅଞ୍ଚଳର ଉନ୍ନତିମୂଳକ କାମ ତଦାରଖ କରିବାପାଇଁ କୌଣସି ଜଣେ ବି ଅଧିକାରୀ ଅବସ୍ଥାପିତ ହୋଇନଥିବା ସ୍ଥଳେ ଜଙ୍ଗଲ ବିଭାଗର ଅନେକ ଅଧିକାରୀ ଏଠାରେ ଅବସ୍ଥାପିତ ଥିଲେ । ତା'ର ପ୍ରକୃତ କାରଣ ହେଲା, ପ୍ରକୃତିରାଣୀର ଅପରୂପ ଶୋଭାଭଣ୍ଡାରର ଉପଯୁକ୍ତ ସଂରକ୍ଷଣ କରିବା ।

ଗାଁର ପୂର୍ବରେ ରଣପୁର, ଦକ୍ଷିଣରେ ବାଣପୁର ଓ ପଶ୍ଚିମରେ ଓଡଗାଁ । ଏଇ ତ୍ରିକୋଣ ଭୂମିଟି ଘନ ଜଙ୍ଗଲ ବେଷ୍ଟିତ । ଶାଳ, ପିଆଶାଳ, ଅସନ ଆଦି ବିଭିନ୍ନ ମୂଲ୍ୟବାନ ବୃକ୍ଷରାଜିରେ ଭରପୂର ଏ ଜଙ୍ଗଲର ସଂରକ୍ଷଣ ଇଂରେଜ ଶାସନ ସମୟରୁ ଚଳିଆସୁଚି । ତା'ସହ କ୍ରମବର୍ଦ୍ଧିଷ୍ଣୁ ଜଙ୍ଗଲ କ୍ଷୟକୁ ରୋକିବାପାଇଁ କାହିଁ କେତେକାଳରୁ ସାଗୁଆନ ଚାରା ରୋପଣ କରାଯାଇ ଯେଉଁ ବିସ୍ତୀର୍ଣ୍ଣ ମୂଲ୍ୟବାନ ଜଙ୍ଗଲ ସୃଷ୍ଟି କରାଯାଇଥିଲା ତା'ର ରକ୍ଷଣାବେକ୍ଷଣ କରିବା ଅପରିହାର୍ଯ୍ୟ । ତା'ସହିତ ଜଙ୍ଗଲଜାତ ଦ୍ରବ୍ୟ ଯଥା; ମହୁଲ, ତେନ୍ତୁଳି, ଝୁଣା, ମହୁ, କେନ୍ଦୁପତ୍ର, ପାଳୁଅ, ଔଷଧୀୟ ବୃକ୍ଷଆଦିର ସଂରକ୍ଷଣରେ ସରକାରଙ୍କ ଆୟ ବଢାଇବା ।



# ଗାଁ ରାସ୍ତା

ଚାରିପାଖେ ବିଲ, ମଝିରେ ଆମ ଗାଁ । ପଶ୍ଚିମ ପଟେ ନାଳ । ବର୍ଷାଦିନେ ଉଛୁଳି ନାଗଝର ନଦୀରେ ପାଣି ଆସିଲେ, ଏଇ ବାଟଦେଇ ବାଡିପଟ ଗହିରକୁ ପାଣି ଯାଏ । ତେଣୁ ନାଳଟା ଏଠାରେ ଚଉଡା ହେଇ ପାଣି ଫୁଲେଇ ଯାଉଥିବାରୁ ସେ ଯାଗାକୁ ଆମେ ଖମା କହିଥାଉ ।  ଗାଁର ପଶ୍ଚିମ ପଟେ ହିଁ ଆମ ସମସ୍ତଙ୍କ ଚଳପ୍ରଚଳ ।  ରାତି ପାହିଲେ, ପୋଖରିକୁ ଯିବାକୁ ହେବ । ଜୀବିକା ହେଲା ଜଙ୍ଗଲ ଓ ପଦା । । ପିଲାମାନେ ସ୍କୁଲକୁ ଯିବେ । କିନ୍ତୁ ରାସ୍ତା ନାହିଁ । ତେଣୁ ଏଇ ନାଳକୁ ପାରିହୋଇ ଯିବାକୁ ହେବ । ବର୍ଷାଦିନ କଥା ଛାଡ । ତେବେ ଯାହା ମନେପଡୁଚି, ଗାଁର ଉନ୍ନତିମୂଳକ କାମ ମଧ୍ୟରେ ସ୍କୁଲ୍, ପଞ୍ଚାୟତ ହେବାପରେ ଗମନାଗମନର ସୁବିଧା ନିମନ୍ତେ ପ୍ରଥମେ ଏଇ ନାଳ ଉପରେ ଗୋଟିଏ ଶଙ୍କ ତିଆରି ହେଲା । ସେ ଦିନର ସମସ୍ତଙ୍କ ମନରେ ଯେଉଁ ଉତ୍ସାହ ଓ ଖୁସି ଖେଳିଥିଲା, ଆଜି ବି ମନେ ପଡୁଅଛି । ଶଙ୍କ ସିନା ତିଆରି ହୋଇଗଲା କିନ୍ତୁ ଆଗକୁ ଯିବାକୁ ରାସ୍ତା ନାହିଁ । ପୋଖରିକୁ  ଯିବା ତ ଅତି ଜରୁରୀ,  ତା'ସହ ପିଲାମାନେ ସ୍କୁଲ୍ ଯିବେ, ଦୈନନ୍ଦିନ ଗତାଗତ ପାଇଁ ଗାଁ ମୁଣ୍ଡରୁ ଆଗକୁ ରାସ୍ତା ନାହିଁ । ଯେଉଁଆଡେ ଯିବ, ବିଲ ହୁଡାରେ । ଅବଶ୍ୟ ସରକାରୀସ୍ତରରେ ଜଙ୍ଗଲ ବିଭାଗ ଅଫିସ ରେକର୍ଡ ଅନୁଯାୟୀ ଶରଣକୁଳଠାରୁ ଆଙ୍ଗିସିଙ୍ଗି ଗାଆଁ ଦେଇ ବେଲରଗଡି ପର୍ଯ୍ୟନ୍ତ ରାସ୍ତା ଚିହ୍ନଟ କରାଯାଇଥିଲା । କିନ୍ତୁ ଗାଁ ମୁଣ୍ଡରୁ ସ୍କୁଲ୍ ପଯ୍ୟନ୍ତ ଅଧମାଇଲି ରାସ୍ତା ଯିବା ଏକ ବଡ ଚିନ୍ତା । ଆମର ଶିକ୍ଷକ ଶ୍ରୀ ଦିବାକାର ମିଶ୍ରଙ୍କ ପ୍ରେରଣାରେ ଗାଁର ଆମେ ସବୁ ପିଲା କୋଡି କୋଦାଳ ଧରି ମାଟିଆସାହି ପେଜେଇ ଆମ୍ବ ମୂଳଠାରୁ ମାଳିଘର ବିଲ ପର୍ଯ୍ୟନ୍ତ ୧୦ ଫୁଟ ଓସାରର ରାସ୍ତା ଫିଟାଇଲୁ । ଗାଁରୁ ସ୍କୁଲ୍ ପର୍ଯ୍ୟନ୍ତ ଯେଉଁ ରାସ୍ତା ଏବେ ସମସ୍ତେ ଦେଖୁଛନ୍ତି ତାହାର ମୂଳଦୁଆ ସେଇଦିନ ପଡିଥିଲା ।

ବହୁ ବର୍ଷ ପରେ, ପୋଖରିହୁଡାଠାରୁ ପଞ୍ଚାୟତ ଅଫିସ, ନୂଆ ସାହି ଓ ଚଉଦମାଣ କୁଦିଆ ଦେଇ ଦକ୍ଷିଣ ଦିଗରେ ରାସ୍ତା ତିଆରି ହୋଇ ତାହା ବନ ବିଭାଗ ରାସ୍ତା ସହ ସଂଯୋଗ ହେଲା ।

**ବାଣପୁର ରାସ୍ତା**

ଆମ ଗାଁ ସହ ବାଣପୁରର ସମ୍ପର୍କ ଅଭିନ୍ନ । ପ୍ରଶାସନିକ ସ୍ତରରେ ଯଦିଓ ସମ୍ପର୍କ ସେମିତି କିଛି ନାହିଁ, ସାମାଜିକ ସ୍ତରରେ ନିବିଡ, କାରଣ ଆମ ଗାଁର ଅଧିବାସୀଙ୍କ ମଧ୍ୟରୁ ଅନେକେ ସେ ଅଞ୍ଚଳର ମୂଳ ବାସିନ୍ଦା । ତେଣୁ ଗାଁର ଅନେକ ପରିବାର ସେଠାକାର ବାସିନ୍ଦାଙ୍କସହ ବନ୍ଧୁ ସମ୍ପର୍କ ଅଦ୍ୟାବଧି ରଖିଆସୁଛନ୍ତି । ରତ୍ନମାଳା ପର୍ବତର ତୁଙ୍ଗ ଶିଖର ଏଇ ଦୁଇ ଅଞ୍ଚଳକୁ ବିଭାଗ କରିଥିଲେ ବି ସେଇ ଦୁର୍ଗମ ଗିରିପଥଦେଇ ଆମଗ୍ରାମର ଅଧିବାସୀଙ୍କୁ ପ୍ରାୟତଃ ଯିବାକୁ ପଡ଼େ । ଏମିତିରେ ତ ଆମ ଅଞ୍ଚଳର ସମସ୍ତ ଅଧିବାସୀଙ୍କୁ ନିଜନିଜ ଜୀବନ ଓ ଜୀବିକା ପାଇଁ ପ୍ରତିଦିନ ଜଙ୍ଗଲକୁ ହିଁ ଯିବାକୁ ହୁଏ । ପଦାଚାଷ, କାଠ ବାଉଁଶ ସହ ଆମ୍ବ, ପଣସ, ତେନ୍ତୁଳି, ଔଷଧୀୟ ଦ୍ରବ୍ୟ ଇତ୍ୟାଦି ସଂଗ୍ରହ ପାଇଁ ବାଣପୁର ରାସ୍ତାର ଅଧା ପର୍ଯ୍ୟନ୍ତ ଯାଇଥାନ୍ତି । ଅନ୍ୟ ଏକ ଆକର୍ଷଣ ହେଲା ବାଣପୁରର ମା' ଭଗବତୀ ପୀଠ ।

ବାଣପୁର ଯିବାପାଇଁ ସରକାରୀ ସ୍ତରରେ ଯେଉଁ ରାସ୍ତା ଇଂରେଜ ଅମଳରୁ ଅଛି, ତାହା ବହୁତ ଦୂର ଓ ବ୍ୟୟସାପେକ୍ଷ । ସେ ପରିପ୍ରେକ୍ଷିରେ କେହି ଜଣେ ଯଦି ପାହାଡଦେଇ ପାଦରେ ଚାଲିଯିବ, ବରଂ ସମୟ କମ୍ ଲାଗିବ ଓ ଖର୍ଚ୍ଚ ବି ବଞ୍ଚିଯିବ । ସଡ଼କ ରାସ୍ତାର ଦୂରତା ୯୦ କି.ମି. ହେବା ସ୍ଥଳେ ପାଦଚଲା ରାସ୍ତାର ଦୂରତା ଆନୁମାନିକ ୩୨ କି.ମି. । ତେଣୁ ଆମପାଇଁ ସେ ରାସ୍ତାର ପ୍ରାସଙ୍ଗିକତା ସର୍ବଦା ଜରୁରୀ ମନେହୁଏ । ସମୟଦୃଷ୍ଟିରୁ ବିଚାରକଲେ, ବାଣପୁର ଯିବାକୁ ପାଦରେ ଗାଁରୁ ୫/୬ କି.ମି. ଯିବାପରେ ଶରଣକୁଳରୁ ବସଯୋଗେ ସୁନାଖଳା, ରଣପୁର, ଚାନ୍ଦପୁର, ବାଲୁଗାଁ ଦେଇ ସେଠାରେ ଅପରାହ୍ନରେ ପହଞ୍ଚିବାକୁ ହେବ । କିନ୍ତୁ ଜଣେ ଭୋର ୫ଟାରେ ପାଦରେ ଚାଲିଗଲେ, ବେଲରଗଡି, ଶିମିଳି, ଶାବଳପୋତା, ଚକାଆମ୍ବ, ଚୁନବେଦି ନିକଟସ୍ଥ ପର୍ବତ ଶିଖରରେ ଦୁଇ/ତିନି ଘଣ୍ଟାରେ ପହଞ୍ଚି ଯିବ। ସେ ଅଞ୍ଚଳ ବାଣପୁର, ରଣପୁର ଓ ନୟାଗଡର ସରହଦ । ତା'ପରେ ଗଡାଣି ଗଡି ଧୂଆଁନଳୀ ସମତଳଭୂମିରେ ଥରେ ପହଞ୍ଚିଗଲେ ଆଶ୍ୱସ୍ତି ମିଳିବ । ଶିମିଳିଗାଁଠାରୁ

ଧୂଆଁନଳୀ ଦୂରତା ପ୍ରାୟ ୭/୮ କି.ମି. । ଅବଶ୍ୟ ସେତିକି ଦୂରତା ଅତିକ୍ରମ କରିବାପାଇଁ କଷ୍ଟସାଧ୍ୟ । ଧୂଆଁନଳୀ ପରେ ଆମ ବନ୍ଧୁମାନଙ୍କର ଗାଁ ଯଥା- କୁମରାଙ୍ଗ, ଅଚ୍ୟୁତରାଜପୁର ଇତ୍ୟାଦି । ପ୍ରାୟ ୧୧ଟା ସମୟାରେ ସେ ଗାଁରେ ହାଜର ।

ବନ ବିଭାଗ ପାଇଁ ମଧ୍ୟ ସେ ରାସ୍ତା ଅତି ଜରୁରୀ । କାରଣ ଓଡିଶାରେ ଯେଉଁ ସବୁ ଘଞ୍ଚ ଜଙ୍ଗଲ ପରିବେଷ୍ଟିତ ଅଞ୍ଚଳ ରହିଚି, ତା'ମଧ୍ୟରେ ଏଇ ଘଞ୍ଚ ଜଙ୍ଗଲ ଅନ୍ୟତମ । ଏହାର ଜୈବ ବିବିଧତା ଓ ବୃକ୍ଷରାଜି ବିଶିଷ୍ଟତାକୁ ଉପଲବ୍ଧି କରି ଇଂରେଜ ସରକାର ସଘନ ଶାଗୁଆନ ବୃକ୍ଷ ରୋପଣ କରି ଜଙ୍ଗଲର ମାନ ବୃଦ୍ଧି କରିଥିଲେ । ଜଙ୍ଗଲର ପର୍ଯ୍ୟବେକ୍ଷଣ ପାଇଁ ଶରଣକୁଳଠାରୁ ଆମଗାଁଦେଇ ଚକାଆମ୍ବ ପର୍ଯ୍ୟନ୍ତ ରାସ୍ତାର ଭିତ୍ତିଭୂମି ବି ସ୍ଥାପନା କରିଥିଲେ । କିନ୍ତୁ ଉପଯୁକ୍ତ ରକ୍ଷଣାବେକ୍ଷଣ ନହେବାରୁ ତାହା ଧୀରେ ଧୀରେ ନିଶ୍ଚିନ୍ନ ହୋଇଗଲା । କେବଳ ବନ ବିଭାଗ ପାଇଁ ନୁହେଁ, ସେ ଅଞ୍ଚଳରେ ଅନେକ ଆଦିବାସୀ ଗାଁ ରହିଚି, (ବେଲରଗଡି, ମସାଣିଝୋଲା, ପୁନିପଡା, ଶିମିଳି, ଗୋଛା ଇତ୍ୟାଦି) ଯେଉଁ ଅଧିବାସୀଗଣ ରାସ୍ତା ନଥିବାରୁ ବାହ୍ୟ ଜଗତରୁ ବିଛିନ୍ନ ହୋଇ ଅକଥନୀୟ ଦୁର୍ଦ୍ଦଶା ଭୋଗ କରୁଛନ୍ତି । ତେଣୁ ଗମନାଗମନ ସୁବିଧା ଦୃଷ୍ଟିରୁ ଏ ରାସ୍ତା ତିଆରି କରିବା ଅତି ଜରୁରୀ ଥିବାରୁ ଏ ଅଞ୍ଚଳବାସୀ ସରକାରଙ୍କ ଦୃଷ୍ଟି ବାରମ୍ବାର ଆକର୍ଷଣ କରିଆସୁଛନ୍ତି ।



# ପାଠାଗାର (ସରସ୍ୱତୀ ଲାଇବ୍ରେରୀ)

ଆମ ପିଲା ଦିନ ଓ ଏବର ସ୍ଥିତି ତୁଳନା କଲେ ସବୁ କ୍ଷେତ୍ରରେ ଯେପରି ପରିବର୍ତ୍ତନ ଘଟିଚାଲିଚି, ଆମ ପୂର୍ବପୀଢିଙ୍କ ସମୟରେ ଭିତ୍ତିଭୂମିର ଅଭାବ୍ ଯୋଗୁଁ ସେମାନେ ବହୁ ବାଧାବିଘ୍ନର ସମ୍ମୁଖୀନ ହେଉଥିଲେ । ବିଶେଷକରି ଯଦି ପାଠପଢା କଥା ବିଚାରକୁ ନେବା, ଶିକ୍ଷା ଓ ଆନୁସଙ୍ଗିକ ସରଞ୍ଜାମ /ଉପାଦାନ ଲବ୍ଧହେବା ସଭିଙ୍କ ପାଇଁ ଏକ ସ୍ୱପ୍ନ ଥିଲା । ଜ୍ଞାନ ଆହରଣ କରିବା, ସୂଚନା ସଂଗ୍ରହ କରିବା, ବିରତି ସମୟରେ ମନକୁ ଟିକିଏ ହାଲୁକା କରିବା ପାଇଁ ପିଲାଠାରୁ ବୁଢା ସଭିଏଁ ବହିଟିଏ ଖୋଜିବା ସ୍ୱାଭାବିକ । ସେ ସମୟର ଆର୍ଥିକ, ସାମାଜିକ ଓ ଭୌଗୋଳିକ ପରିସ୍ଥିତି ଯାହା ଥିଲା, ବହି କିଣିବା ସମସ୍ତଙ୍କ ପକ୍ଷରେ ସମ୍ଭବ ନଥିଲା । ଯାହାର ବି କିଣିବାକୁ କ୍ଷମତା ଥିଲା, ଦରକାର ସମୟରେ ଓ ସବୁ ଜାଗାରେ ପାଇବା ବି କଷ୍ଟ। ପାଠ୍ୟପୁସ୍ତକ ଦି'ଖଣ୍ଡ ବ୍ୟତୀତ ଅନ୍ୟ ବହି ପଢିବାକୁ ହେଲେ, ପାଠାଗାର ଉପରେ ହିଁ ନିର୍ଭର କରିବାକୁ ହେଉଥିଲା । କିନ୍ତୁ ଆଜିକାଲି ଆଉ ପାଠାଗାର ଯିବା ଦରକାର ପଡୁନାହିଁ କାରଣ ଲେଖା, ସୂଚନା, ମୁଦ୍ରଣ ଇତ୍ୟାଦି ଡିଜିଟାଲାଇଜ ହେବା ହେତୁ ଇଣ୍ଟରନେଟରେ ସବୁ ଲବ୍ଧ ହୋଇ ପାରୁଛି । ତେଣୁ ଏକ ପାଠାଗାର ପ୍ରତିଷ୍ଠା କରିବାର ଇଚ୍ଛା କେବଳ ଜଣେ ଦୂରଦୃଷ୍ଟିସମ୍ପନ୍ନ ବ୍ୟକ୍ତି ହିଁ ଚିନ୍ତା କରିପାରିବେ ।ସେଇ ପରପେକ୍ଷିରେ, ୰ସୋମନାଥ ଆଚାର୍ଯ୍ୟଙ୍କ ଏକ ଲେଖାରୁ ସ୍ପଷ୍ଟ ସୂଚନା ମିଳେ ଯେ, ଲିଙ୍ଗରାଜ ମିଶ୍ର ତାଙ୍କ ବାଲ୍ୟ ବନ୍ଧୁ ୰ଲୋକନାଥ ଆଚାର୍ଯ୍ୟଙ୍କ ସହ ମିଶି କିଛି ପଢା ବହି ସହ ଅନ୍ୟାନ୍ୟ ବହି ସଂଗ୍ରହ କରି ଲୋକନାଥ ଆଚାର୍ଯ୍ୟଙ୍କ ଘରେ ଏକ କ୍ଷୁଦ୍ର ପାଠାଗାର ପ୍ରତିଷ୍ଠା କଲେ ଓ ଅନ୍ୟମାନଙ୍କୁ ସଭ୍ୟଭୁକ୍ତ କରି ପାଠାଗାରର କଳେବର ବୃଦ୍ଧି କରିବା ଅଭିପ୍ରାୟରେ ମୁଷ୍ଟିଭିକ୍ଷା ସଂଗ୍ରହ କଲେ । କିନ୍ତୁ ବନ୍ଧୁଙ୍କ ଅକାଳ ବିୟୋଗରେ ମର୍ମାହତ ହୋଇ କିଛିଦିନ ପାଇଁ ସ୍ଥଗିତ ରଖିଲେ । ପରେ ସେ

ପାଠାଗାରକୁ ମହେଶ୍ୱର ରଥଙ୍କ ଘରକୁ ସ୍ଥାନାନ୍ତର କରିଦେଲେ । ସମୟକ୍ରମେ ସେ ପାଠାଗାର ଏକ ପୂର୍ଣ୍ଣାଙ୍ଗ ରୂପ ନେଲା ।

ସେଇ ଯୋଗଜନ୍ମା ଲିଙ୍ଗରାଜ ମିଶ୍ର ୧୯୩୦ ମସିହାରେ ଆମ ଅଞ୍ଚଳରେ ଜ୍ଞାନର ପ୍ରସାର ପାଇଁ ଆମ ଗାଁ ପରି ଏକ ମଫସଲ ଗାଁରେ ଗୋଟିଏ ପାଠାଗାର ପ୍ରତିଷ୍ଠା କରିବା ପାଇଁ ସ୍ୱପ୍ନ ଦେଖିଥିଲେ । ତାଙ୍କ ମନର ଭାବନା ଶରଣକୂଳର ✓ଦଣ୍ଡପାଣି ମିଶ୍ର (ସମ୍ପାଦକ, ଦେଶବାର୍ତ୍ତା ନୟାଗଡ ପତ୍ରିକା ଓ ପରେ ପ୍ରକାଶକ, ଧରିତ୍ରୀ ଦୈନିକ ସମ୍ବାଦପତ୍ର) ତାଙ୍କ ସଂସ୍ପର୍ଶରେ ଆସିଥିବା ବେଳେ ସେ ପ୍ରକାଶ କରିଥିବା କଥା ଦଣ୍ଡପାଣି ମିଶ୍ର ତାଙ୍କ ଲେଖାରେ ପ୍ରକାଶ କରିଥିଲେ । କିଛି ବର୍ଷପରେ ଦିନେ ✓ ଦଣ୍ଡପାଣି ମିଶ୍ର ଡକରା ପାଇ କଜଳାଇପଲ୍ଲୀରେ ଆସି ପହଞ୍ଚିଲେ । ତିନଟି କାଠ ଡାବଲ, ଗୋଟିଏ ଛୋଟ କାଠର ଥାକ (ର୍‍ୟାକ୍) ରେ ପୁରୁଣା ଓ କିଛି ନୂଆ ବହି ଯୋଗାଡ କରାଗଲା । ଲିଙ୍ଗରାଜ ମିଶ୍ର ଡାକୁଥାନ୍ତି ଓ ଦଣ୍ଡପାଣି ମିଶ୍ର ସୂଚୀ ତିଆରି କରୁଥାନ୍ତି । ଅନ୍ୟ ୨/୩ ଜଣ ଥାକରେ ବହି ସଜାଡୁଥାନ୍ତି । ପରଦିନ, ୧୯୩୫ ମସିହା ପବିତ୍ର ଶ୍ରୀପଞ୍ଚମୀ ତିଥିରେ ଗାଁ ଲୋକଙ୍କ ସହାୟତାରେ କଜଳେଇ ଠାକୁରାଣୀ ପରିସରରେ ଏକ ଚାଳଘର ତିଆରି କରି ପାଠାଗାର ପ୍ରତିଷ୍ଠା ହେଲା । ✓ କବିରାଜ ଜଗନ୍ନାଥ ରଥଙ୍କ ଦ୍ୱାରା ପାଠାଗାର ଉଦ୍‌ଘାଟିତ କରାଗଲା ଓ ତା'ର କଳେବର ବୃଦ୍ଧିପାଇଁ ସେଇଦିନଠାରୁ ଚାନ୍ଦା (ଟଙ୍କା ଓ ଶସ୍ୟ) ଆଦାୟ କରାଗଲା । ସମୟକ୍ରମେ, ପାଠାଗାର ପ୍ରତି ଅଞ୍ଚଳବାସୀଙ୍କର ଆଗ୍ରହ ବଢିଲା, ବହି ସଂଖ୍ୟା ବଢିଚାଲିଲା । ଇତ୍ୟବସରରେ ଲିଙ୍ଗରାଜ ମିଶ୍ର ନୟାଗଡ଼ ରାଜା କୃଷ୍ଣଚନ୍ଦ୍ର ମାନଧାତାଙ୍କ ସହ ପତ୍ରାଳାପ କରିବା ସହ ସାକ୍ଷାତ କରି ପାଠାଗାର ପ୍ରତିଷ୍ଠା ବିଷୟରେ ବିସ୍ତୃତ ବିବରଣୀ ପ୍ରଦାନ କଲେ ଓ ରାଜାଙ୍କ ଦୃଷ୍ଟି ଆକର୍ଷଣ କରିପାରିଥିବାରୁ ପାଠାଗାରର ସ୍ଥାୟୀ ଗୃହ



ନିର୍ମାଣ ପାଇଁ ରାଜା ରାଜକୋଷରୁ ୧୦୦୦ଟଙ୍କା ମଂଜୁରୀ ପ୍ରଦାନ କଲେ । ସେଇ ଅନୁଦାନ ଓ ବେସରକାରୀ ସାହାଯ୍ୟରେ ୧୯୪୧ ମସିହାରେ ପାଠାଗାରର ସ୍ଥାୟୀ ଗୃହ ନିର୍ମାଣ ହେଲା । ଧୀରେ ଧୀରେ ପାଠାଗାରର କଳେବର ବୃଦ୍ଧି ଘଟିଲା । ଏକ ସୁନ୍ଦର କୋଠାଘର ନିର୍ମାଣ ହେବାପରେ ତା' ମଧ୍ୟରେ ବିଭନ୍ନ ଭାଷାର ନାମୀ ଦାମୀ ପାଖାପାଖି ଦୁଇ ହଜାର ପୁସ୍ତକ ସଂଗ୍ରହ କରି ସମସ୍ତଙ୍କୁ ପଢିବାକୁ ପ୍ରେରଣା ଦେଲେ। ସେତିକି ନୁହେଁ, ପାଠାଗାରର ସୁବିଧା ଦୂର ଦୂରାନ୍ତରୁ ଇଚ୍ଛୁକ ପାଠକଙ୍କୁ କିପରି ଲବ୍ଧ ହେବ, ସେକଥାକୁ ମଧ୍ୟ ଦୃଷ୍ଟିରେ ରଖି ଶରଣକୁଳରେ ଏହାର ଏକ ଶାଖା ଖୋଲିବା ପାଇଁ ସ୍ଥାନ ନିରୂପଣ କରିଥିଲେ ।

ଆମ ଗାଁରେ ପାଠାଗାର ପ୍ରତିଷ୍ଠା ହେବା ପରେ ଲିଙ୍ଗରାଜ ମିଶ୍ର ନୟାଗଡ଼ରେ ଏକ ଆଦର୍ଶ ପାଠାଗାର ପ୍ରତିଷ୍ଠା କରିବା ସିଦ୍ଧାନ୍ତ ନେଇ କେତେକ ସରକାରୀ କର୍ମଚାରୀ, ଓକିଲ, ଓ ଠିକାଦାରଙ୍କ ସହ ପରାମର୍ଶ କଲେ । ରାଜାଙ୍କ ଘରୋଇ ସମ୍ପାଦକ ୰ ବିଷ୍ଣୁ ପ୍ରସାଦ ସିଂଙ୍କ ସହମତି କ୍ରମେ ରାଜାଙ୍କୁ ଅନୁରୋଧ କରାଗଲା ଓ ତାଙ୍କ ଅନୁମତି କ୍ରମେ ରାଣୀ ସୌଭାଗ୍ୟ ମଂଜରୀ ଦେବୀଙ୍କ ନାମରେ ପାଠାଗାର ପ୍ରତିଷ୍ଠା ହେଲା । ପାଠାଗାରର ଉନ୍ନତି ପାଇଁ ରାଜା ୪୦୦୦ ଟଙ୍କା ମଂଜୁର କଲେ । ପାଠାଗାର ପରିଚାଳନା ଦାୟିତ୍ୱରେ ଲିଙ୍ଗରାଜ ମିଶ୍ର, ଦଣ୍ଡପାଣି ମିଶ୍ର ଓ ସଦାଶିବ ଷଡଙ୍ଗୀ ରହିଲେ ।

ପାଠାଗାର ଆନ୍ଦୋଳନ କ୍ରମଶଃ ବଢିବାରେ, ଅନେକ ଗାଁରେ ଛୋଟ ଛୋଟ ପାଠାଗାର ଗଢିଉଠିଲା । ଏଥିପାଇଁ ସାହାଯ୍ୟର ସୁଅ ଛୁଟିଲା, ଏପରିକି ଚାଇନା ସରକାରଙ୍କଠାରୁ ମଧ୍ୟ ସାହାଯ୍ୟ ମିଳିଲା । ଏ ସମ୍ବାଦ ରାଜ୍ୟରେ ପ୍ରଚାର ହେବାରୁ, ଉତ୍କଳ ପାଠାଗାର ସମିତି ଲିଙ୍ଗରାଜ ମିଶ୍ର ଓ ଦଣ୍ଡପାଣି ମିଶ୍ରଙ୍କୁ ସଭ୍ୟଭୁକ୍ତ କରିଥିଲେ । ଗଡ଼ଜାତ ମିଶ୍ରଣ ପରେ ନିଖିଳ ଉତ୍କଳ ପାଠାଗାର ସମିତି କାର୍ଯ୍ୟାଳୟ ବ୍ରହ୍ମପୁରରୁ ନୟାଗଡକୁ ସ୍ଥାନାନ୍ତର ହେଲା।

୧୯୪୯ ମସିହାରେ ୪ର୍ଥ ନିଖିଳ ଉତ୍କଳ ପାଠାଗାର ସମ୍ମିଳନୀ ନୟାଗଡ଼ରେ ବହୁ ଆଡ଼ମ୍ବରରେ ଅନୁଷ୍ଠିତ ହେଲା। ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବ ସଭାପତି, ଲିଙ୍ଗରାଜ ମିଶ୍ର ସମ୍ପାଦକ ଓ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଚିନ୍ତାମଣି ଆଚାର୍ଯ୍ୟ ସମ୍ମିଳନୀର ଉଦ୍‌ଘାଟକ ଥିଲେ। ପାଠାଗାର ଆନ୍ଦୋଳନର ଅଗ୍ରଗାମୀ ଦୂତ ରୂପେ ନିଜର ଦକ୍ଷତା ପ୍ରତିପାଦନ କରିବା ସହ ରାଜ୍ୟ ଓ ଜାତୀୟସ୍ତରରେ ସେ ସୁନାମ

ଅର୍ଜନ କରିଥିଲେ। ୧୯୭୫ରେ ସମିତି କାର୍ଯ୍ୟାଳୟ ଭୁବନେଶ୍ୱରକୁ ସ୍ଥାନାନ୍ତର ହୋଇଥିଲା ।

ପାଠ ପଢା ଓ ପାଠାଗାର ନିଶା ତାଙ୍କର ପିଲାବେଳୁ ହିଁ ଥିଲା । ବହୁ ଆଗରୁ ସିଏ ତାଙ୍କ ବାଲ୍ୟବନ୍ଧୁ ଲୋକନାଥ ଆଚାର୍ଯ୍ୟଙ୍କୁ ଅନୁପ୍ରାଣିତ କରି ନିଜ ବହି ସହ ଅନ୍ୟ ମାନଙ୍କଠାରୁ ବହି ସଂଗ୍ରହ କରି ଆଚାର୍ଯ୍ୟଙ୍କ ଘରେ ପାଠାଗାର ଆରମ୍ଭ କରିଥିଲେ ଓ ଅନ୍ୟାନ୍ୟ ସାଂସ୍କୃତିକ କାର୍ଯ୍ୟକ୍ରମ ଯଥା ନାଟକ, ଭଜନ, ଛାନ୍ଦ ତର୍କ ଇତ୍ୟାଦି ମାଧ୍ୟମରେ ଅଞ୍ଚଳବାସୀଙ୍କ ମନୋରଞ୍ଜନ କରିବାସହ ପାଠାଗାର ପ୍ରତି ଆକୃଷ୍ଟ କରାଇଲେ । ସମୟକ୍ରମେ, ଉଦ୍ୟମ ଜାରି ରଖିବାହେତୁ ଉପରେ ଦର୍ଶାଯାଇଥିବା ପୂର୍ଣ୍ଣାଙ୍ଗ ପାଠାଗାର (ସରସ୍ୱତୀ ଲାଇବ୍ରେରୀ). ପ୍ରତିଷ୍ଠା କରିବାରେ ସଫଳ ହେଲେ । ପରବର୍ତ୍ତୀ ସମୟରେ, ସିଏ ଯେତେବେଳେ ନୟାଗଡ଼ ପାଠାଗାର ସହ ସଂଶ୍ଳିଷ୍ଟ ହେଲେ, ସୋମନାଥ ଆଚାର୍ଯ୍ୟ ଓ ବଡ଼କୁଟୁଣୀ ନାରାୟଣ ନାୟକଙ୍କୁ ଯୁଗ୍ମ ସମ୍ପାଦକ ପଦରେ ନିଯୁକ୍ତି ଦେଇ ଗାଁ ପାଠାଗାର ପରିଚାଳନା ଦାୟିତ୍ୱ ଦେଇ ନିଜେ ନୟାଗଡ଼ ପାଠାଗାରର କାର୍ଯ୍ୟ ପରିଚାଳନା କରୁଥିଲେ । ରାମଚନ୍ଦ୍ର କର ଲାଇବ୍ରେରୀଆନ ପଦରେ ଥାଇ ଦେଖାରଖା କଲେ ।



# ଶିକ୍ଷାବ୍ୟବସ୍ଥା

ଅନୁନ୍ନତ ଅଞ୍ଚଳ ହେଲେବି ଶାସନ ଗାଁ ହେତୁ ସମସ୍ତଙ୍କର ଶିକ୍ଷାପ୍ରତି ଅବଶ୍ୟ ଆଗ୍ରହ ଥିଲା । କିନ୍ତୁ ଉଦ୍ୟମର ଅଭାବ ହେତୁ କେବଳ ତୃତୀୟ ସୋପାନରେ ସବୁ ଛାତ୍ର ପାଠର ଡୋରି ବାନ୍ଧିବସୁଥିଲେ । କାରଣ ନିକଟରେ ଉଚ୍ଚଶ୍ରେଣୀକୁ ଯିବାକୁ ବିଦ୍ୟାଳୟ ନଥିଲା, ଅତି ନିକଟ କହିଲେ ଶରଣକୁଳ । ଛୋଟପିଲାମାନେ ଶରଣକୁଳ ଯିବାଆସିବା କରିପାରିବେ ନାହିଁ । ତେଣୁ ଶିକ୍ଷାରୁ ବଞ୍ଚିତ ହେବା ସ୍ୱାଭାବିକ । ସେପରି ଏକ ଘଡିସନ୍ଧି ମୁହୂର୍ତ୍ତରେ ଯୋଗଜନ୍ମା ଲିଙ୍ଗରାଜ ମିଶ୍ରଙ୍କର ଆବିର୍ଭାବ ହିଁ ସମସ୍ୟାର ସମାଧାନର ବାଟ ଫିଟାଇଲା । ଶିକ୍ଷାର ପ୍ରସାର ଓ ପ୍ରଚାରର କର୍ଣ୍ଣଧାର ହେଉଛନ୍ତି ୰ଲିଙ୍ଗରାଜ ମିଶ୍ର । ତାଙ୍କରି ପ୍ରେରଣା ଓ ପ୍ରଚେଷ୍ଟାରେ ସବୁ ପରିବାରର ପିଲା ଆଗକୁ ପଢିବା ସୁଯୋଗ ପାଇପାରିଲେ ।

ସେ ସମୟର ପରିସ୍ଥିତିକୁ ଅନୁଧ୍ୟାନ କଲେ, ଆମ ଗାଁ ପରି ଏକ ନିପଟ ମଫସଲ ଅଞ୍ଚଳରେ ଉଚ୍ଚ ଇଂରାଜୀ ବିଦ୍ୟାଳୟ ଖୋଲିବା କଥା ସ୍ୱପ୍ନରେ ବି କେହି ଭାବିବ ନାହିଁ । କିନ୍ତୁ ସେ ସ୍ୱପ୍ନକୁ ସାକାର କରିଥିଲେ ସେଇ ମହାତ୍ମା ୰ଲିଙ୍ଗରାଜ ମିଶ୍ର । ତାଙ୍କରି ପ୍ରଚେଷ୍ଟାରେ ପ୍ରଥମ ପଦକ୍ଷେପରେ, ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ଓ ଖୁବ୍ କମ୍ ବ୍ୟବଧାନରେ ମଧ୍ୟ ଇଂରାଜୀ ବିଦ୍ୟାଳୟ ସହ ଉଚ୍ଚ ଇଂରାଜୀ ବିଦ୍ୟାଳୟ ଖୋଲିଲା ।

ଆମ ଗାଁ ଉଚ୍ଚ ଇଂରାଜୀ ବିଦ୍ୟାଳୟ ଖୁବ୍ କମ୍ ଦିନରେ ନୟାଗଡ ସବ୍‌ଡିଭିଜନରେ ସୁନାମ ଅର୍ଜନ କରିପାରିଲା । ବିଦ୍ୟାଳୟର ପ୍ରତିଷ୍ଠା ଓ ଶିକ୍ଷା ବ୍ୟବସ୍ଥା ବିଷୟରେ ବିସ୍ତୃତ ବିବରଣୀ ଅନ୍ୟ ପୃଷ୍ଠାରେ ସ୍ଥାନିତ କରାଯାଇଅଛି । ଏବେ ଆମେ ଏହାର ଶିକ୍ଷାଦାନ ସହ ପରିଚାଳନା ବ୍ୟବସ୍ଥା ଉପରେ ଆଲୋକପାତ କରିବା ।



ପୂର୍ବରୁ ଆମେ ସୂଚିତ କରିଛୁ ଯେ, ଗାଁରେ କେବଳ ନିମ୍ନ ପ୍ରାଥମିକ ଶିକ୍ଷା ପର୍ଯ୍ୟନ୍ତ ବ୍ୟବସ୍ଥା ଥିଲା । ୧୯୧୦ ମସିହାରେ ସେ ବିଦ୍ୟାଳୟ ପ୍ରତିଷ୍ଠା କରାଯାଇଥିଲା । ଆମ ପୂର୍ବ ପିଢି ସେ ବିଦ୍ୟାଳୟରେ ପଢୁଥିଲେ । ବଧିସାହି ଓ ଆମଗାଁ ମଧ୍ୟବର୍ତ୍ତୀ ମହୁଲେଇ ଠାକୁରାଣୀ ନିକଟ ଗହିର ମଝିରେ ଏକ ଛୋଟ ପଡ଼ିଆ ମଧ୍ୟରେ ୨ ବଖରାର ଏକ ଚାଳଘର ଓ ସେଥିରେ ଶିଶୁ, ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଶ୍ରେଣୀକୁ ନେଇ ସେ ବିଦ୍ୟାଳୟ । ଆନୁସଙ୍ଗିକ ଭିତ୍ତିଭୂମି କହିଲେ, ପାଣି ପାଇଁ କୂଅଟିଏ ଥାଏ । ପଡ଼ିଆରେ ଖେଳକୁଦ କଲାବେଳେ ଗୋହିରିଆ ଗଛଟିଏ ଛାଇ ଯୋଗାଏ । ନିମ୍ନ ପ୍ରାଥମିକ ବିଦ୍ୟାଳୟ ମାନେ କେବଳ ଶୈଶବ ଅବସ୍ଥାରେ ଥିବା ୫/୭ ବର୍ଷର ପିଲାମାନେ ହିଁ ପଢିବାକୁ ଯାଆନ୍ତି । ତେଣୁ ବିଲ ହୁଡାରେ ଯିବା କେତେ କଷ୍ଟ ତାହା ସହଜରେ ଅନୁମେୟ । ବର୍ଷାଦିନ ଆସିଲେ ଅବସ୍ଥା ଅତୀବ ଦୟନୀୟ । ଆମେ ପଢିବା ସମୟରେ ଜଗନ୍ନାଥ ମିଶ୍ର ଓ ରାମଚନ୍ଦ୍ର ମିଶ୍ର ଶିକ୍ଷକ ଥିଲେ । ପାଠ ସହିତ ଖେଳକୁଦ ବି ହୁଏ । ରାମମାଷ୍ଟ୍ରେ ଭାରି ରାଗୀ । ଅନୁଶାସନରେ କେବେବି ଢିଲା ଦିଅନ୍ତି ନାହିଁ । ସାମାନ୍ୟ ଭୁଲ କିମ୍ବା ବ୍ୟତିକ୍ରମ ପାଇଁ ଅତ୍ୟଧିକ ଶାରୀରିକ ଦଣ୍ଡ ଦେଇଥାନ୍ତି ।



ମୋର ଯାହା ମନେପଡୁଚି, ମୁଁ ତୃତୀୟ ଶ୍ରେଣୀ ଉତ୍ତୀର୍ଣ୍ଣ ହୋଇ ଚତୁର୍ଥକୁ ଯିବା ବର୍ଷ ବିଦ୍ୟାଳୟଟି ହାଇସ୍କୁଲ ପରିସରକୁ ସ୍ଥାନାନ୍ତର ହେଲା । ତେଣୁ ତା'ପର ବର୍ଷଠାରୁ ଛାତ୍ରମାନଙ୍କର ଦୁଃଖ ସାମାନ୍ୟ ଲାଘବ

ହେଲା । ଭଲ ପରିବେଶ, ଖେଳକୁଦ ପାଇଁ ବିସ୍ତୀର୍ଣ୍ଣ ପ୍ରାନ୍ତର, ନିକଟରେ ପୋଖରୀ ଇତ୍ୟାଦି ଇତ୍ୟାଦି । ସେ ବିଦ୍ୟାଳୟରେ ଦୁଇ ବର୍ଷ ପଢ଼ିବା ପରେ ତା'ର ସଂଲଗ୍ନ ମଧ୍ୟଇଂରାଜୀ ବିଦ୍ୟାଳୟକୁ ପଢ଼ିବାକୁ ଗଲି ।

## ସାରସ୍ୱତ ଲୋକ ବିଦ୍ୟାପୀଠ

ଏଇ ବଣ ପାହାଡଘେରା ଅପହଞ୍ଚ ଜାଗାରେ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ଉଦ୍ୟୋଗ ଓ ଅଞ୍ଚଳବାସୀଙ୍କ ସାହାଯ୍ୟରେ ୧୯୫୦ ଶିକ୍ଷାବର୍ଷଠାରୁ ଏକ ଉଚ୍ଚ ଇଂରାଜୀ ବିଦ୍ୟାଳୟ (ସାରସ୍ୱତ ଲୋକ ବିଦ୍ୟାପୀଠ) ପ୍ରତିଷ୍ଠା କରାଗଲା । ତେବେ ନାନା ବାଧାବିଘ୍ନ ସତ୍ତ୍ୱେ ବିଦ୍ୟାଳୟ ସ୍ଥାପନାରେ ଯେଉଁସବୁ ପଦକ୍ଷେପ ନିଆଯାଇଥିଲା ତା'ର ସମ୍ୟକ ସୂଚୀ ଏଠାରେ ଉପସ୍ଥାପନା କରିବା ମୁଁ ଉଚିତ୍ ମନେ କରୁଛି ।

ନିମ୍ନ ପ୍ରାଥମିକ ଶିକ୍ଷାକୁ ସମ୍ପ୍ରସାରଣ କରିବା ଲକ୍ଷ୍ୟନେଇ ପ୍ରଥମେ ୧୯୪୮-୪୯ମସିହା ଶିକ୍ଷାବର୍ଷଠାରୁ ପାଠାଗାର ଗୃହରେ ଚତୁର୍ଥ ଶ୍ରେଣୀ ଖୋଲାଯାଇ ଗୋଲଗାଁର ହରିହର ମହାପାତ୍ରଙ୍କୁ ଶିକ୍ଷକ ରୂପେ ନିଯକ୍ତି ଦିଆଗଲା । ତା' ପରବର୍ଷ, ୧୯୪୯-୫୦ମସିହା ଶିକ୍ଷାବର୍ଷରେ ପଞ୍ଚମ ଶ୍ରେଣୀ ଖୋଲାଯିବାପରେ ଉଚ୍ଚ ପ୍ରାଥମିକ ଶିକ୍ଷା ପ୍ରଦାନ କ୍ଷେତ୍ରରେ ଯେଉଁ ଅଭାବ ଥିଲା ତାହା ପୂରଣ ହୋଇପାରିଲା ।

ଲିଙ୍ଗରାଜ ମିଶ୍ରଙ୍କ ମନରେ କ'ଣ ସବୁ ଯୋଜନା ଥାଏ ତାହା ଜାଣିବା କଷ୍ଟ। ୧୯୫୦-୫୧ ଶିକ୍ଷାବର୍ଷ ଆରମ୍ଭରେ ହଠାତ୍ ସେ ଘୋଷଣା କରିଦେଲେ ଯେ, ଆମେ ଷଷ୍ଠ ଓ ଅଷ୍ଟମ ଶ୍ରେଣୀ ପଢ଼ା ଏକା ସାଙ୍ଗରେ ଆରମ୍ଭ କରିବା । ତାଙ୍କର ସେ ନିଷ୍ପତ୍ତିରେ ସମସ୍ତେ ଚକିତ ହୋଇଗଲେ । ଘର ନାହିଁ; ଆସବାବପତ୍ର ନାହିଁ, ଇଏ ଏମିତି କ'ଣ କହୁଛନ୍ତି, ପରସ୍ପର ମଧ୍ୟରେ ସଭିଏଁ କୁହାକୁହି ହେଲେ । ହେଲେ ସେ ଭାରି ଜିଦ୍ ଖୋର ମଣିଷ । ଡମସାହିର ଚନ୍ଦ୍ର ଶେଖର ଦଳବେହେରାଙ୍କୁ ପ୍ରଧାନ ଶିକ୍ଷକ ଓ ଭାଲିଆଡିହି ଗାଁର ନିମାଇଁ ଚରଣ ପଟ୍ଟନାୟକଙ୍କୁ ସହକାରୀ ଶିକ୍ଷକରୂପେ ନିଯୁକ୍ତି ଦେଇ ପାଠାଗାର ଗୃହରେ ଷଷ୍ଠ ଓ ଅଷ୍ଟମ ଶ୍ରେଣୀ ଏକା ସାଙ୍ଗରେ ଖୋଲିଦେଇ ପାଖ ଗାଁର ଉଦ୍ୟୋଗୀ ଭଦ୍ରବ୍ୟକ୍ତିମାନଙ୍କ ସହ କଥାବାର୍ତ୍ତାହେଲେ (ଗନ୍ଧବାରଣ ଗାଁର ପବିତ୍ର ନାୟକ, ବୈଷ୍ଣବ ନାୟକ, ମାଧବ

ନାୟକ, ବଧିସାହିର ଶରତ ସାମନ୍ତ, ଗୋବିନ୍ଦ ସ୍ୱାଇଁ, ପାଣିଭଣ୍ଡାରର ରାମ ପ୍ରଧାନ, କୁରୁମୁଣ୍ଡାଳୀର ଶ୍ୟାମ ସାହୁ, ବଡକୁଟୁଣୀର ଉଛବ ପାତ୍ର, ନାରାୟଣ ନାୟକ, ବିଶ୍ୱନାଥ ନାୟକ, ଆମ ଗାଁର ହାଡୁବନ୍ଧୁ ମିଶ୍ର ଓ କବିରାଜ ଜଗନ୍ନାଥ ରଥ) । ସେମାନଙ୍କ ପରାମର୍ଶ କ୍ରମେ ଗନ୍ଧବାରଣ ଓ ଆମ ଗାଁ ସୀମାରେ ଥିବା କୋଠ ଜମିରେ ଥିବା ଆମ୍ବ ତୋଟାରେ ବିଦ୍ୟାଳୟ ଗୃହ ତିଆରି କରିବା ପାଇଁ ଜାଗା ଚିହ୍ନଟ କରାଗଲା । ତତ୍‌ସଂଲଗ୍ନ ଆମ ଗାଁର ବୈଦ୍ୟନାଥ ଆଚାର୍ଯ୍ୟଙ୍କ ଆମ୍ବତୋଟାରୁ ମଧ୍ୟ କିଛି ଜମି ଦାନ ସ୍ୱରୂପ ଗ୍ରହଣ କରାଗଲା । ଅଞ୍ଚଳର ସମସ୍ତ ଗ୍ରାମବାସୀଙ୍କ ସାହାଯ୍ୟରେ ସାତବଖରା ଝାଟିମାଟି ଘର ତିଆରି ହେଲା । ଯେଉଁ କେତେକ ଆମ୍ବଗଛ କଟାଗଲା, ତହିଁରୁ ଲବ୍ଧ ଅର୍ଥ ମଧ୍ୟ ବିଦ୍ୟାଳୟ ଗଢିବା ଖର୍ଚ୍ଚରେ ବିନିଯୋଗ ହେଲା । କେତେଜଣ ବଦାନ୍ୟ ବ୍ୟକ୍ତିଙ୍କ ଆର୍ଥିକ ସାହାଯ୍ୟ ପ୍ରଥମ ବର୍ଷର ଖର୍ଚ୍ଚ ପାଇଁ ସାହାଯ୍ୟ ହେଲା, ଯଥା- ଟେବୁଲ ଚଉକି ଓ କାନ୍ଥ ଘଣ୍ଟା ପାଇଁ ବଡକୁଟୁଣୀ ବିଶ୍ୱନାଥ ନାୟକ ପାଞ୍ଚ ଶତ ଟଙ୍କା, ତିନିଜଣ ଶିକ୍ଷକଙ୍କ ଏକ ବର୍ଷ ପାଇଁ ଦରମା ଉଛବ ପାତ୍ର ଦାନ ଆକାରରେ ପ୍ରଦାନ କଲେ । ୧୯୫୨ ମସିହାରେ ପାଠାଗାର ଗୃହରୁ କୋଠ ତୋଟା ନୂତନ ଗୃହକୁ ବିଦ୍ୟାଳୟ ସ୍ଥାନାନ୍ତର ହେଲା ।

ଇତି ମଧ୍ୟରେ ଅଷ୍ଟମ ଓ ନବମ ଶ୍ରେଣୀ ପାଇଁ ସରକାରଙ୍କ ମଞ୍ଜୁରୀ ପ୍ରାପ୍ତି ସକାଶେ ଦକ୍ଷିଣାଞ୍ଚଳ ଶିକ୍ଷାବିଭାଗକୁ ଚିଠି ଲେଖିବା ସହିତ ଡକ୍ଟର ହରେକୃଷ୍ଣ ମହତାବଙ୍କ ସହ ଯୋଗାଯୋଗ କରାଗଲା । ମହତାବଙ୍କ ସୁପାରିଶକ୍ରମେ ମଣ୍ଡଳ ପରିଦର୍ଶକ ଶ୍ରୀ ଗୋକୁଳି ଚରଣ ଶତପଥୀଙ୍କୁ ଆଣି ବିଦ୍ୟାଳୟ ଓ ତା'ର ଭିତ୍ତିଭୂମି ପରିଦର୍ଶନ କରାଇବା ବ୍ୟବସ୍ଥା କରାହେଲା । କିନ୍ତୁ ପରିଦର୍ଶକ ମଞ୍ଜୁରୀ ଦେବା ପରିବର୍ତ୍ତେ ଲିଖିତ ଟିପ୍ପଣୀ ଦେଲେ, ଏଠାରେ କ'ଣ ବାଘ ଭାଲୁ ପାଠ ପଢିବେ ? ତେବେ ଲିଙ୍ଗରାଜ ମିଶ୍ର ଧୈର୍ଯ୍ୟ ହରାଇ ନଥିଲେ । ବାରମ୍ବାର ଯୋଗାଯୋଗ କରିବା ପରେ ଅଷ୍ଟମ ଶ୍ରେଣୀପାଇଁ ମଞ୍ଜୁରୀ ଆଦେଶ ଦେଇ, ଜଣେ ତାଲିମ ପ୍ରାପ୍ତ ସ୍ନାତକ ପ୍ରଧାନ ଶିକ୍ଷକ ସହ ବିଜ୍ଞାନ ଓ ସଂସ୍କୃତ ଶିକ୍ଷକ ନିଯୁକ୍ତି ହେବାପରେ ନବମ ଶ୍ରେଣୀ ପାଇଁ ମଞ୍ଜୁରୀ ମିଳିବ ବୋଲି ପରିଦର୍ଶକ ଆଦେଶ ଦେଲେ । ସେ ଚିଠି ପାଇବାପରେ ସମସ୍ତେ ଆଶ୍ୱସ୍ତ ହେଲେ ଓ ବିଦ୍ୟାଳୟ ଉନ୍ନତି ଏବଂ ସୁପରିଚାଳନା ଉଦ୍ୟମ ଜାରି ରହିଲା । ସରକାରଙ୍କ ନିୟମକୁ ସମ୍ମାନ ଦେବାପାଇଁ ପ୍ରଧାନ ଶିକ୍ଷକଙ୍କ

ସହ ଆମ ଗାଁର ରାମଚନ୍ଦ୍ର କର (ସଂସ୍କୃତ), ବାସୁଦେବ ମିଶ୍ର, ସୋମନାଥ ଆଚାର୍ଯ୍ୟ, କୃଷ୍ଣ ଚନ୍ଦ୍ର ମିଶ୍ର (ବିଜ୍ଞାନ) ଇତ୍ୟାଦି କେତେଜଣ ଶିକ୍ଷିତ ଯୁବକ ଲିଙ୍ଗରାଜ ମିଶ୍ରଙ୍କ ଅନୁରୋଧ କ୍ରମେ ବିଦ୍ୟାଳୟରେ ବିନା ପାରିଶ୍ରମିକରେ ପାଠ ପଢାଇବା ପାଇଁ ସ୍ୱଇଚ୍ଛାରେ ଆଗେଇ ଆସିଲେ । ଏଇ ଅନୁକ୍ରମେ ପ୍ରଥମ ବର୍ଷ ପାଠ ପଢାଚାଲିଲା। ଚନ୍ଦ୍ରଶେଖର ଦଳବେହେରା ୧୯୫୪ ମସିହାରେ ତାଲିମ ପାଇଁ ଯିବାରୁ ତାଙ୍କ ସ୍ଥାନରେ ଶ୍ରୀ ବାସୁଦେବ ପ୍ରଧାନ ପ୍ରଧାନ ଶିକ୍ଷକ ରୂପେ କାର୍ଯ୍ୟରେ ଯୋଗ ଦେଲେ । ପ୍ରଥମ ବର୍ଷ ବିଦ୍ୟାଳୟରେ ୯ ଜଣ ଛାତ୍ର ନାମ ଲେଖାଇଥିଲେ । ଗୋଡିପଡ଼ାର ମଦନ ମୋହନ ନନ୍ଦ, ୧୯୫୬ ମସିହାରେ ଏ ବିଦ୍ୟାଳୟରୁ ପ୍ରଥମ ମାଟ୍ରିକ୍ ପରୀକ୍ଷା ଦେଇ କୃତକାର୍ଯ୍ୟ ହୋଇଥିଲେ ।

ମୁଁ ଷଷ୍ଠଶ୍ରେଣୀରେ ପଢିବା ସମୟକୁ ମଧ୍ୟ ଇଂରାଜୀ ବିଦ୍ୟାଳୟ ହାଇସ୍କୁଲ ପରିସରଭୁକ୍ତ ହୋଇଯାଇଥିଲା ଓ ବାସୁଦେବ ପ୍ରଧାନ ପ୍ରଧାନ ଶିକ୍ଷକରୂପେ କାର୍ଯ୍ୟଭାର ଗ୍ରହଣ କରିଥିଲେ । ତାଙ୍କ ତତ୍ତ୍ୱାବଧାନରେ ଯେଉଁ ଶିକ୍ଷକ ଗୋଷ୍ଠି ଗଢାଯାଇଥିଲା, ସେମାନେ ଚିର ନମସ୍ୟ, କାରଣ ଏପରି ଏକ ବେସରକାରୀ ପୁଣି ନୂଆକରି ଗଢିଉଠିଥିବା ବିଦ୍ୟାଳୟ, ଯାହାର କି ଆନୁସଙ୍ଗିକ ଭିତ୍ତିଭୂମି ଦୁର୍ବଳ ଓ ସମ୍ବଳର ଘୋର ଅଭାବ, ସେଠାରେ ଯୋଗଦେଇ କମ୍ ଦରମାରେ ଉତ୍ସର୍ଗୀକୃତ ଶିକ୍ଷାଦାନ କରିବାରେ କେବେବି ହେଳା କରିନଥିଲେ ବା କୁଣ୍ଠାବୋଧ କରିନଥିଲେ ।

ନୂଆକରି ଗଢିଉଠିଥିବା ବିଦ୍ୟାଳୟର ଅସୁବିଧା ଅନେକ । ଶ୍ରେଣୀ କକ୍ଷରୁ ଆରମ୍ଭ କରି ଆସବାବ ପତ୍ର, ବିଜ୍ଞାନଗାରର ସରଞ୍ଜାମ ଇତ୍ୟାଦିର ଘୋର ଅଭାବ ଥାଇ ମଧ୍ୟ ଲିଙ୍ଗରାଜ ମିଶ୍ରଙ୍କ ଇଚ୍ଛା ଓ ପ୍ରେରଣାକୁ ପାଥେୟ କରି ଉତ୍ତମ ଶିକ୍ଷାପ୍ରଦାନ ପାଇଁ ପ୍ରଧାନ ଶିକ୍ଷକ ଯେପରି ସୁପରିଚାଳନା କଲେ, ତାହା ଛାତ୍ରବୃନ୍ଦ, ପରିଚାଳନା କମିଟି ଓ ସ୍ଥାନୀୟ ଅଭିଭାବକମାନେ ତାଙ୍କ ପ୍ରତି କୃତଜ୍ଞ ରହିବା ସ୍ୱାଭାବିକ । ସମୟର ସ୍ରୋତରେ କେତେ କ'ଣ ଘଟଣା ଘଟିଯାଇଛି । ବହୁ ଛାତ୍ର ଏ ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହୋଇ ଭିନ୍ନ ଭିନ୍ନ ସଂସ୍ଥା ଓ ପଦରେ ଥାଇ ସୁନାମ ଅର୍ଜନ କରିପାରିଛନ୍ତି । କିନ୍ତୁ ସଫଳତାର ମୂଳ ସିଦ୍ଧାନ୍ତ :- ଏଇ ବିଦ୍ୟାଳୟର ଶିକ୍ଷା ପଦ୍ଧତି ଓ ବାସୁଦେବ ପ୍ରଧାନଙ୍କ ପ୍ରେରଣା। ଏ ଅଞ୍ଚଳବାସୀଙ୍କ ମନରେ ସିଏ ଏବେ ସୁଦ୍ଧା ଉଜ୍ଜିବୀତ ହୋଇ ରହିଛନ୍ତି।

## ଶିକ୍ଷକମଣ୍ଡଳୀ

| | | |
|---|---|---|
| ବାସୁଦେବ ପ୍ରଧାନ | ପ୍ରଧାନ ଶିକ୍ଷକ | ଇଂରାଜୀ |
| ରାଜ କିଶୋର ନାୟକ | ଉପ ପ୍ରଧାନ ଶିକ୍ଷକ | ଇଂରାଜୀ |
| ମାଧବ ଚରଣ ପଟ୍ଟନାୟକ | ସହକାରୀ ଶିକ୍ଷକ | ବିଜ୍ଞାନ |
| କୃଷ୍ଣ ଚନ୍ଦ୍ର ମହାରଣା | ସହକାରୀ ଶିକ୍ଷକ | ଗଣିତ ଓ ଭୂଗୋଳ |
| ବିଶ୍ୱନାଥ ସାହୁ | ସହକାରୀ ଶିକ୍ଷକ | ଇତିହାସ (ଏନ୍‌ସିସି) |
| ଭଗବାନ ମହାପାତ୍ର | ସହକାରୀ ଶିକ୍ଷକ | ସାହିତ୍ୟ |
| ଶ୍ରୀଧର ବେହେରା | ସହକାରୀ ଶିକ୍ଷକ | ଶରୀରତତ୍ତ୍ୱ ଓ ସ୍ୱାସ୍ଥ୍ୟ |
| ରଘୁନାଥ ଶର୍ମା | ସହକାରୀ ଶିକ୍ଷକ | ସଂସ୍କୃତ |
| ଆଦିକନ୍ଦ ପଟ୍ଟନାୟକ ଓ ଭାଗିରଥୀ ମହାପାତ୍ର | ଶାରିରୀକ ଶିକ୍ଷା | |
| ତାରେଶ୍ୱର ପାତ୍ର | | କିରାଣି |

ବାସୁଦେବ ପ୍ରଧାନ ଓ କୃଷ୍ଣ ମହାରଣାଙ୍କ ପ୍ରତି ସଭିଙ୍କର ଆନୁଗତ୍ୟ ଥିବାର କାରଣ ହେଲା, କଜଳାଇପଲ୍ଲୀ ପରି ମଫସଲ ଗାଁରେ ଜନ୍ମନେଇ ବାହ୍ୟ ଜଗତରୁ ସମ୍ପୂର୍ଣ୍ଣ ବିଛିନ୍ନ ହୋଇ ରହିବା ଫଳରେ ଆମେ ସମସ୍ତେ ନିଜ ମାତୃଭାଷା ଓଡିଆ ବ୍ୟତୀତ ଅନ୍ୟ ଭାଷାରେ ପଟୁତା ଅର୍ଜନ କରିବା କେତେ କଷ୍ଟକର କଥା ସଭିଙ୍କୁ ଜଣା । କିନ୍ତୁ ପ୍ରଧାନ ଶିକ୍ଷକ ମହୋଦୟ ତାଙ୍କ ପଟୁତା ଓ ବାକ୍‌ଶୈଳୀ ମାଧ୍ୟମରେ ସମସ୍ତଙ୍କୁ ଇଂରାଜୀରେ ଯେପରି ଦକ୍ଷତା ଅର୍ଜନ କରାଇପାରିଲେ, ସେଥିପାଇଁ ସେ ଚିର ସ୍ମରଣୀୟ । ସେହିପରି ମାଟ୍ରିକ୍ ପାସ କରି ମାଟ୍ରିକ ପରୀକ୍ଷାର୍ଥୀଙ୍କୁ ଗଣିତରେ ଦକ୍ଷତା ପ୍ରଦାନ କରିବାର ଗୁଣ ମହାରଣା ସାରଙ୍କ ପାଖରେ ଥିବାରୁ ଆମେ ମାନେ ଗର୍ବିତ ।

## ମେଧାବୀ ଛାତ୍ରବୃନ୍ଦ

| | | |
|---|---|---|
| ମଦନ ମୋହନ ନନ୍ଦ | ଗୋଡିପଡା | ପ୍ରଶାସନିକ ଅଧିକାରୀ |
| ତ୍ରିଲୋଚନ କର | ଗୋରଡା | ଭାରତୀୟ ଡାକ ଓ ତାର ବିଭାଗ |
| ସୋମନାଥ ମିଶ୍ର | କଜଳାଇପଲ୍ଲୀ | ଏମ୍ ବି ବି ଏସ୍, |
| ବୈକୁଣ୍ଠ ନାଥ ରାୟ | ଭାଲିଆଡିହି | ଭାରତୀୟ ଇଂଜିନିଅରିଂ ସେବା |

| | | |
|---|---|---|
| ଭଗବାନ ସାହୁ | ଗୋଡିପଡା | ଏମ୍ ବି ବି ଏସ୍, |
| ବନମାଳୀ ଘଡେଇ | ଗୋଲଗାଁ | ଏମ୍ ବି ବି ଏସ୍, |
| ବାନାମ୍ବର ରାୟ | ଭାଲିଆଡିହି | ଏମ୍ ବି ବି ଏସ୍ |
| ଭଗବାନ ସାହୁ | ବରସାହି | ପଶୁ କଲ୍ୟାଣ ଓ ଚିକିତ୍ସା |
| ନରସିଂହ ମହାପାତ୍ର | ସାକ୍ଷୀଗୋପାଳ | ବରିଷ୍ଠ, ଲେଖା ପରୀକ୍ଷା, ଏ.ଜି. |
| ବଳଭଦ୍ର ପ୍ରଧାନ | ନୟାଗଡ | ଅଧିକାରୀ, ଏ.ଜି. |
| ସୂର୍ଯ୍ୟମଣି ଦାସ | ଗୋଲଗାଁ | ଇଂଜିନିୟରିଂ ସ୍ନାତକ |
| ଶରତ ଚନ୍ଦ୍ର ମିଶ୍ର | କଜଳାଇପଲ୍ଲୀ | ଇଂଜିନିୟରିଂ ସ୍ନାତକ |
| ଅନନ୍ତ ଚନ୍ଦ୍ର ମିଶ୍ର | କଜଳାଇପଲ୍ଲୀ | ଇଂଜିନିୟରିଂ |
| ରାଜେନ୍ଦ୍ର ପ୍ରସାଦ ମିଶ୍ର | କଜଳାଇପଲ୍ଲୀ | କୃଷି ବିଜ୍ଞାନ |
| ଭାଗିରଥୀ ମହାପାତ୍ର | ଚାହାଳୀ | ଏମ୍ ବି ବି ଏସ୍ |

ଶିକ୍ଷା ସହିତ ଖେଳ କୁଦରେ ସ୍କୁଲ୍‌ର ଛାତ୍ର ମଧ୍ୟ ବହୁ ଆଗରେ ଥିଲେ । ଭଲି ଓ ଫୁଟବଲ୍ ଭଳି ଖେଳରେ ଛାତ୍ରମାନେ ଭଲପ୍ରଦର୍ଶନ କରି ଜିଲ୍ଲାସ୍ତରରେ ନାମ କମାଇଥିଲେ । ଆଦିକନ୍ଦ ପଟ୍ଟନାୟକ ଓ ଭାଗିରଥୀ ମହାପାତ୍ର ପରି ପିଇଟି ଖେଳରେ ଯେପରି ତାଲିମ ଦେଇ ଗଢିଥିଲେ ସେଇ ଛାତ୍ରମାନେ ଏବେ ମଧ୍ୟ ମନେପକାଉଛନ୍ତି । ଖେଳରେ ନିମ୍ନଲିଖିତ ଛାତ୍ରମାନେ ବିଶେଷ ପାରଦର୍ଶିତା ଲାଭ କରିଥିଲେ ।

ବଂଶୀଧର ଦଳବେହେରା
ଶରତ ଚନ୍ଦ୍ର ମିଶ୍ର (କ ଓ ଖ)
ବ୍ରଜେନ୍ଦ୍ର ନାୟକ
ଦଣ୍ଡପାଣି ବାଇ

ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ଅକାଳ ବିୟୋଗ ଘଟିଯିବା ପରେ ବିଦ୍ୟାଳୟର ପରିଚାଳନା ଦାୟିତ୍ୱ ହାଡୁବନ୍ଧୁ ମିଶ୍ର ନେଲେ । ତାଙ୍କ ନେତୃତ୍ୱରେ ଅଞ୍ଚଳର କେତେଜଣ ଉଦ୍ୟୋଗୀ ବ୍ୟକ୍ତିଙ୍କୁ ନେଇ ଏକ ପରିଚାଳନା ସମିତି ଗଠନ କରାଗଲା । ସେ ସମ୍ପାଦକ ପଦରେ ଥାଇ ଯେଉଁ ଗଠନ ମୂଳକ ପ୍ରେରଣାରେ ପ୍ରଧାନ ଶିକ୍ଷକ ବାସୁଦେବ ପ୍ରଧାନଙ୍କ ସହ ସମସ୍ତ ଶିକ୍ଷକମଣ୍ଡଳୀ ଉତ୍ସାହିତ ହେଲେ ଓ ଅବିରତ ଅକ୍ଳାନ୍ତ ପରିଶ୍ରମ କରି ଗୁଣାତ୍ମକ ଶିକ୍ଷାଦାନ ଦେଇଥିବାରୁ ବିଦ୍ୟାଳୟର ଟେକ

ବଜାୟ ରହିଲା । ଫଳସ୍ୱରୂପ, ଲିଙ୍ଗରାଜ ମିଶ୍ରଙ୍କ ଦେହାନ୍ତ ହେବାର ଅଳ୍ପ କେତେମାସ ପରେ ବିଦ୍ୟାଳୟଟି ସରକାରୀ ବିଦ୍ୟାଳୟ ମାନ୍ୟତା ପ୍ରାପ୍ତ ହେଲା ଓ ତାଙ୍କ ସ୍ୱପ୍ନ ସାକାର ହେଲା ।

## ପଢାବେଳର ଚଗଲାମୀ

ଶୃଙ୍ଖଳା ଓ ଅନୁଶାସନ ଥାଇବି କିଶୋର ବୟସର ଚଗଲାମି ଯୋଗୁଁ ଅପଦସ୍ତ ହେବା ସ୍ମୃତି ଗୁଡିକ ଏବେ ବି ତାଜା ଅଛି । ଶିକ୍ଷାରେ ଉନ୍ନତି ସହିତ ଉତ୍ତମ ଚରିତ୍ର ଗଠନ ପାଇଁ ପ୍ରଧାନ ଶିକ୍ଷକ ଓ ମହାରଣା ସାର ତାଙ୍କ ଅନୁଶାସନରେ ଢିଲା ଦିଅନ୍ତି ନାହିଁ । ପ୍ରତ୍ୟେକ ଛାତ୍ରର ଚାଲି, ବେଶ, ଅଙ୍ଗସଜ୍ଜା ଇତ୍ୟାଦି ପ୍ରତି ମଧ୍ୟ ଧ୍ୟାନ ଦେଇଥାନ୍ତି ଓ ବ୍ୟତିକ୍ରମରେ କଠୋର ଦଣ୍ଡ ପ୍ରଦାନ କରିଥାନ୍ତି । ଛାତ୍ର ମାନଙ୍କର ଗତିବିଧି ଉପରେ ତୀକ୍ଷ୍ଣ ନଜର ରଖିଥାନ୍ତି । ସହିପରି ଅନ୍ୟ ଜଣେ ଶିକ୍ଷକଙ୍କ କଥା ମନେପଡେ । ସେ ହେଉଛନ୍ତି, ଆମ ଗାଁର ସେଇ ଲିଙ୍ଗରାଜ ମିଶ୍ରଙ୍କ ବଂଶଜ ଶ୍ରୀଯୁକ୍ତ ଦିବାକର ମିଶ୍ର । ଯଦିଓ ସିଏ ଖୁବ୍ କମ୍ ଦିନପାଇଁ ଶିକ୍ଷକତା କରି କଟକସ୍ଥ ପ୍ୟାରୀ ମୋହନ ଏକାଡେମୀକୁ ଚାଲିଗଲେ, ସେଇ ସ୍ୱଳ୍ପ ସମୟର ଶିକ୍ଷାଦାନ ଚତୁର୍ଥ/ପଞ୍ଚମ ଶ୍ରେଣୀର କୋମଳମତି ଶିଶୁମାନଙ୍କ ମନରେ ଯେଉଁ ଛାପ ସୃଷ୍ଟି କରିଥିଲା, ତାହା ଆଜିବି ତାଜା ଅଛି । ନିଜ ମାତୃଭାଷାକୁ କିପରି ସଠିକ ବ୍ୟବହାର କରାଯାଏ, ତାଙ୍କଠାରୁହିଁ ଶିକ୍ଷା ମିଳିଥିଲା। ଯଥା- କ୍ରିୟାବାଚକ ବିଶେଷ୍ୟ - ଶୟନ, ଭୋଜନ, ଗମନ ଇତ୍ୟାଦି । ତା'ସହିତ ପିଲାଙ୍କ ଅନୁଶାସନ ପ୍ରତି ସେ ଅଧିକ ଧ୍ୟାନ ଦେଉଥିଲେ । କିନ୍ତୁ ସେଇ ବୟସ ଚଗଲାମିର ବେଳ । ମଉଜ ମଜଲିସ କରିବା ଇଛା । ତେଣୁ ଛାତ୍ରାବାସ ଅନୁଶାସନକୁ ଭାଙ୍ଗି କିପରି ମନମାନି କରିବୁ ଭାବୁଥାଉ । ମୋର ସାଙ୍ଗ ସଂସାରୀ, ମଣି (ପୂର୍ଣ୍ଣ), ହର, ବାନା, ଓ ଆଉ ୨/୩ ଜଣ । ସମୟେ ସମୟେ ଆମେ ସେ ଶୃଙ୍ଖଳା ଓ ଅନୁଶାସନ ପ୍ରତି ଏତେ ବୀତସ୍ପୃହ ହୋଇଯାଉଥିଲୁ ଯେ, ଗପସପ, ଥଟ୍ଟାମଜା ସାଙ୍ଗକୁ ନିକଟସ୍ଥ ଗାଁରେ ପାଳନ କରାଯାଉଥିବା ଉତ୍ସବ ଅବସରରେ ମଞ୍ଚସ୍ଥ ହେଉଥିବା ନାଟକ, ଶିଖରପୁରରେ ଆୟୋଜନ ହେଉଥିବା ଫୁଟବଲ୍ ଖେଳ ଓ ଜାଗର ଯାତ୍ରାରେ ଶରଣକୁଳ ଯାଇ କଟକୀ ଅପେରା ଦେଖିବା ନିଶା କିପରି ପୂରଣ ହେବ ସେ ଫନ୍ଦି କରି ଧରା ପଡିବା ସ୍ମୃତି ଆଖି ଆଗରେ ଭାସିଯାଉଚି । ସେତେବେଳର ଅନୁଶାସନ ସିନା ପିତା ଲାଗୁଥିଲା, କିନ୍ତୁ ତା'ର

ପରିଣାମ କିପରି ଉତ୍ତମଚରିତ୍ର ଗଠନରେ ସାହାଯ୍ୟକଲା ତାହା ଆମେ ପରେ ଅବଶ୍ୟ ଉପଲବ୍ଧି କଲୁ । ଏମିତି ଏକ କୌତୂହଳପୂର୍ଣ୍ଣ ଘଟଣାରେ ମୋର ସାଙ୍ଗମାନେଙ୍କ ସହ ଯେପରି ଲଜ୍ଜିତ ହୋଇଥିଲୁ ତାହା ମନେ ପଡିଲେ ହସ ଲାଗେ ଓ ତା'ପାଇଁ ଅନୁଶୋଚନା ବି କରୁ ।

ଚିତ୍ତବିନୋଦନ ପାଇଁ ସେତେବେଳେ ଆମ ଅଞ୍ଚଳରେ ସେମିତି କିଛି ବ୍ୟବସ୍ଥା ନଥିଲା । ଗାଁ ମେଳା ମହୋତ୍ସବରେ କେବେ କେମିତି ନାଟକ ମଞ୍ଚସ୍ଥ ହୁଏ । କିନ୍ତୁ ବର୍ଷରେ ଥରେ ଶରଣକୁଳ ଜାଗର ଯାତ୍ରା ଦେଖିବାର ମଜା ନିଆରା । ନାନାପ୍ରକାର ମନୋରଞ୍ଜନ ସାଙ୍ଗକୁ କଟକୀ ଅପେରାର (ରାଢଙ୍ଗ, ଜଗତସିଂହପୁର) ଆକର୍ଷଣ ସମ୍ପୂର୍ଣ୍ଣ ଭିନ୍ନ । ଶରଣକୁଳକୁ ଗମନାଗମନର ସୁବିଧା ନଥାଇ ମଧ୍ୟ ବାରମ୍ବାର ଯାଇ ଅପେରା ଦେଖିବାର ପ୍ରବଳ ଇଚ୍ଛା । ହେଲେ ଛାତ୍ରାବାସର କଡ଼ା ଅନୁଶାସନ ହେତୁ ଆମକୁ ଅନୁମତି ମିଳିବା କଷ୍ଟ । ଅବଶ୍ୟ ଥରେ ଯାଇ ଦେଖିବାକୁ ଅନୁମତି ଦିଅନ୍ତି। ତେଣୁ ଶିକ୍ଷକଙ୍କ ତତ୍ତ୍ୱାବଧାନରେ ଛାତ୍ରମାନେ ଦଳ ଦଳ ହୋଇ ଯାଇ ଦେଖି ଆସନ୍ତି। ଦଶମ ପଢିବା ବର୍ଷ ଆମେ ୫/୬ଜଣ ସାଙ୍ଗ ସେ ନାଟକ ନିଶାରେ ରାତି ୯ଟାରେ ସମସ୍ତେ ଶୋଇଯିବା ପରେ ଛାତ୍ରାବାସରୁ ଲୁଚି ଶରଣକୁଳ ଦୌଡିଦୌଡି ଯାଇ ନାଟକ ଦେଖି ପୁଣି ରାତି ପାହିବା ପୂର୍ବରୁ ଫେରିଆସୁ । ଏପରି ଚାରି ପାଞ୍ଚ ଦିନ ଯିବା ପରେ ଆମର ସେ ଚଗଲାମି ମହାରଣା ସାରଙ୍କ କାନକୁ ଗଲା । ଆମେ କିନ୍ତୁ ଅଭିଯୋଗକୁ ଖଣ୍ଡନ କଲୁ । କିନ୍ତୁ ଦିନେ ମହାରଣା ସାର କେତେଜଣ ଛାତ୍ରଙ୍କୁ ନାଟକ ଦେଖିବା ପାଇଁ ସାଙ୍ଗରେ ନେଇ ଶରଣକୁଳ ଯାଇଥିଲେ । ସେଦିନ ଗୋଟିଏ ଭଲ ନାଟକ ମଞ୍ଚସ୍ଥ ହେବା ଖବର ଶୁଣି ଆମେ ଲୋଭ ସମ୍ବରଣ ନକରିପାରି ରାତିରେ ସେମାନେ ଯିବା ପରେ ଚାଲିଲୁ । ଲୁଚିଲୁଚି ନାଟକ ଦେଖିଲୁ ଓ ଶେଷ ଦୃଶ୍ୟ ମଞ୍ଚସ୍ଥ ହେବା ପୂର୍ବରୁ ଫେରିଆସିଲୁ । ଆମର ଧାରଣା ଆମକୁ କେହି ଦେଖିନାହାଁନ୍ତି, କିନ୍ତୁ ଚୋରଘର ସବୁଦିନ ଅନ୍ଧାର ନଥାଏ, ମହାରଣା ସାରଙ୍କ ଦୃଷ୍ଟିରୁ ଆମେ ବର୍ତ୍ତିପାରିନଥିଲୁ । ପରଦିନ ଜେରା ବେଳେ ଯଦିଓ ଆମେ ଶରଣକୁଳ ଯିବା କଥା ସ୍ୱୀକାର କଲୁନାହିଁ, ପରେ କିନ୍ତୁ ସବୁ ଫନ୍ଦି ଧରାପଡିଗଲା ଓ ଆମେ ଅପରାଧୀ ଭଳି ଅପମାନିତ ହେଲୁ ।



# ଡାକସେବା

ଏପରି ଏକ ଅପହଞ୍ଚ ଅଞ୍ଚଳରେ ଗମନାଗମନର ସୁବିଧା ନଥାଇ ଅଧିବାସୀମାନେ ଅକଥନୀୟ ଅସୁବିଧାର ସମ୍ମୁଖୀନ ହେବା କଥା ସମସ୍ତଙ୍କୁ ଜଣା । ପତ୍ର ବିନିମୟ ମାଧ୍ୟମରେ ଲୋକମାନେ ସରକାରୀ, ବେସରକାରୀ ଓ ନିଜ ଆତ୍ମୀୟ ସ୍ୱଜନଙ୍କ ସହ ସମ୍ପର୍କ ସ୍ଥାପନା କରିପାରିଲେ କିଛିଟା ଆଶ୍ୱସ୍ତି ମିଳିବ, ଏ କଥା ଚିନ୍ତାକରି ଲିଙ୍ଗରାଜ ମିଶ୍ର ସରକାରୀ ସ୍ତରରେ ଯୋଗାଯୋଗ ଜାରି ରଖିଲେ । ତାଙ୍କର ସେ ଉଦ୍ୟମ ମଧ୍ୟ ସଫଳ ହେଲା । ୧୯୫୪ ମସିହାରେ ଆମ ଗ୍ରାମରେ ଏକ ଅତିରିକ୍ତ ଡାକସେବା କାର୍ଯ୍ୟାଳୟ ଅନୁଷ୍ଠିତ ହେଲା । ରାମଚନ୍ଦ୍ର କର ପ୍ରଥମ ପୋଷ୍ଟ ମାଷ୍ଟର, ଜୟକୃଷ୍ଣ ମାହାପାତ୍ର (ମୋ ନନା) ଚିଠି ବିତରକ ଓ ବଡକୁଟୁଣି ଗ୍ରାମର ଅଇଁଠା ପରିଡା ରନର୍ । ଡାକସେବା ଆରମ୍ଭହେବା ପରେ ଲୋକମାନଙ୍କର ବାହ୍ୟଜଗତ ସହ ଯୋଗାଯୋଗ କ୍ଷେତ୍ରରେ ଯେତିକି ସୁବିଧା ହେଲା ତା' ସହିତ ଡାକଘରେ ସଞ୍ଚୟ ଜମା ଖାତା ଖୋଲି ଉପାର୍ଜିତ ଅର୍ଥର କିଛି ଅଂଶ ଜମା ରଖିବା ଫଳରେ ତାହା ଦରକାର ସମୟରେ କାମରେ ଆସିଲା ଓ ଆର୍ଥିକ ଅବସ୍ଥାରେ ବି ସୁଧାର ଆସିଲା ।



# ପଡୋଶୀଙ୍କ ସହ ସମ୍ପର୍କ

ଗନ୍ଧବାରଣ – ବୈଷ୍ଣବ ଚରଣ ନାୟକ,

ବଡକୁଟୁଣୀ – ଉତ୍ସବ ପାତ୍ର ଓ ନାରାୟାଣ ନାୟକ

ଗୋଲଗାଁ - ଗୋକୁଳାନନ୍ଦ ଦାସ

ଆମ ଗାଁ ବିଷୟରେ ସୂଚନା ଦେବାବେଳେ ପଡୋଶୀ ଗାଁର ଏଇ କେତଜଣ ବ୍ୟକ୍ତିତ୍ୱ ମନରେ ଆପେ ଆପେ ଆସିଯାଏ । ଏକେତ ଗୋଟିଏ ଅଞ୍ଚଳରେ ବସବାସ କଲେ ନିଜ ଗାଁ ସହ ପଡୋଶୀ ଗାଁର ପରିବେଶ ଅନୁଧ୍ୟାନ କରିବା ବିଶେଷ ଜରୁରୀ । ସେ ଗାଁର ଲୋକମାନଙ୍କର ସକାରାତ୍ମକ ମନୋଭାବ ଆମ ଉନ୍ନତି ପଥକୁ ସୁଗମ କରିବା ଯେମିତି ସମ୍ଭବ, ନକାରାତ୍ମକ ମନୋଭାବ ବିପରୀତଗାମୀ କରିବା ଅସ୍ୱାଭାବିକ ନୁହେଁ। ତେଣୁ ପଡୋଶୀ ଗାଁ ମାନଙ୍କର ମୁଖିଆ ମାନଙ୍କ ସହ ଲିଙ୍ଗରାଜ ମିଶ୍ର ସର୍ବଦା ସମ୍ବନ୍ଧ ରଖିଥାନ୍ତି । ଶିକ୍ଷାକୁ ପ୍ରାଧାନ୍ୟ ଦେଇ ଯେତେବେଳେ ଉଚ୍ଚ ଇଂରାଜୀ ବିଦ୍ୟାଳୟ ସ୍ଥାପନା କଥା ସେ ଚିନ୍ତାକଲେ, ସେଇ କେତେଜଣ ଉତ୍ତମ ଚିନ୍ତାଧାରା ବ୍ୟକ୍ତିଙ୍କ ଗୁଣ ଚିହ୍ନି ସେମାନଙ୍କୁ ନିଜର କରିବାସହ ସେମାନେ କିପରି ଅଞ୍ଚଳର ଉନ୍ନତି ପାଇଁ ଉତ୍ସର୍ଗୀକୃତ କାମ କରିବେ, ସେଥିପାଇଁ ପ୍ରବର୍ତ୍ତାଇ ଥିଲେ ଓ ସେ ଅନୁକ୍ରମେ ସମସ୍ତେ ବିଦ୍ୟାଳୟର କାର୍ଯ୍ୟକାରୀ କମିଟି ସଭ୍ୟ ରହିଲେ। ବିଶେଷକରି, ଗୋକୁଳାନନ୍ଦ ଦାସଙ୍କ ଅନ୍ତର୍ନିହିତ ଗୁଣ ଚିହ୍ନି ତାଙ୍କୁ ପଞ୍ଚାୟତର ପ୍ରଥମ ସରପଞ୍ଚ ହେବାକୁ ସେ ହିଁ ପ୍ରୋତ୍ସାହନ ଦେଇଥିଲେ ।



# ମେଳା ମହୋତ୍ସବ ଓ ଯାନି ଯାତ୍ରା

ବ୍ରାହ୍ମଣ ଶାସନରେ ପୂଜାପାଠ ହିଁ ମୁଖ୍ୟ ଜୀବିକା । ପୂର୍ବ ଦିଗରେ ଲୋକନାଥ ଦେବ ଓ ପଶ୍ଚିମଦିଗରେ ମା' କଜଳେଇ ଠାକୁରାଣୀଙ୍କ ଆସ୍ଥାନ । ଗାଁର ମଙ୍ଗଳ ତାଙ୍କରି ଆଶୀର୍ବାଦରୁ ହିଁ ସମ୍ଭବ ଏ ବିଶ୍ୱାସ ତ ସଭିଙ୍କ ମନରେ ଥାଏ । ତେଣୁ ସେମାନଙ୍କର ପୂଜା ଅର୍ଚ୍ଚନା ପର୍ବପର୍ବାଣି ସବୁ ଯେପରି ନୀତି ଅନୁଯାୟୀ ଓ ସୂଚାରୁ ରୂପେ ପାଳନ କରାଯିବ, ସେଥିପାଇଁ ଗ୍ରାମବାସୀ ସର୍ବଦା ତତ୍ପର ଥାଆନ୍ତି । ଆମେ ଯେହେତୁ ପିଲାଥିଲୁ, ଆମପାଇଁ ମୁଖ୍ୟ ଆକର୍ଷଣ ଥିଲା ଠାକୁରଙ୍କ ଆଡମ୍ବରପୂର୍ଣ୍ଣ ସାଜସଜ୍ଜା ଓ ଭୋଗ । ପୀଠ ଦେବାଦେବୀଙ୍କ ନୀତି କାନ୍ତି, ପର୍ବପର୍ବାଣି ସାଙ୍ଗକୁ ଗଣେଶ ପୂଜା, ସରସ୍ୱତୀ ପୂଜା, ଡ୍ରାମା, ନାଟକ ଏପରି ଯେଉଁସବୁ ଉତ୍ସବରେ ଆମେ ଭରପୂର ମଜା ନେଉଥିଲୁ ସେଗୁଡିକ ହେଲା,

ବୈଶାଖ - ପଣା ସଂକ୍ରାନ୍ତି, ଓ କୋଠହୋମ

ଜ୍ୟେଷ୍ଠ – ଚନ୍ଦନ ଯାତ୍ରା ଓ ଶୀତଳ ଷଷ୍ଠୀ

ଶ୍ରାବଣ – ଗହ୍ମା ପୂର୍ଣ୍ଣମୀ

ଭାଦ୍ରବ – ଗଣେଶ ପୂଜା

ଆଶ୍ୱିନ - ଦଶହରା ଓ ଠାକୁରାଣୀ ପର୍ବ

କାର୍ତ୍ତିକ – କାର୍ତ୍ତିକ ବ୍ରତ, ଦୀପାବଳୀ ଓ ଉଦିଆପନ (ଉଦ୍‌ଯାପନ)

ମାର୍ଗଶୀର – ପ୍ରଥମାଷ୍ଟମୀ

ପୌଷ – ବଉଳ ଅମାବାସ୍ୟା

ମାଘ – ଅଗ୍ନିଉତ୍ସବ (ଅଗିପୋଡା)

ଫାଲ୍ଗୁନ - ଦୋଳ ପୂର୍ଣ୍ଣମୀ

ଚୈତ୍ର – ଠାକୁରାଣୀ ପର୍ବ

ବର୍ଷ ଆରମ୍ଭ ପଣା ସଂକ୍ରାନ୍ତିରୁ । ତେଣୁ ସଂକ୍ରାନ୍ତି ହୋମ ବିଧି ଅନୁସାରେ ଠାକୁରାଣୀଙ୍କ ଆଗରେ ହୁଏ । ଗାଁର ଆବାଳବୃଦ୍ଧବନିତା ଯଜ୍ଞରେ ଭାଗ ନିଅନ୍ତି । ସମୟକ୍ରମେ, ମକଦମଙ୍କ (ହରେକୃଷ୍ଣ ମିଶ୍ର) ପ୍ରସ୍ତାବ ଅନୁଯାୟୀ ଯଜ୍ଞ ସହ ନାଚର ଆୟୋଜନ ବି ହେଲା । ତେଣୁ ପଞ୍ଚାୟତ ପଡିଆରେ ତିନିଦିନଧରି ଦିନରେ ଯାତ୍ରା ଓ ରାତିରେ ନାଟକ ମଞ୍ଚସ୍ଥ ହେଉଥିଲା ।

ସରନ୍ତି ସୋମବାର – ବୈଶାଖର ଶେଷ ସୋମବାର ପର୍ବ ବଡ଼ ମଜାଦାର। ଏ ପର୍ବ ଆମ ଗାଁ ମହାଜନ ଶରଣକୁଳ ଲଡୁବାବା ପୀଠରେ ପାଳନ କରିଥାନ୍ତି । ମୁଁ ପିଲା ଥିବା ସମୟରେ କେତେଥର ସେଥିରେ ସାମିଲ ହୋଇଥିଲି । ଖରା ଦିନ ପୁଣି ଶୁକ୍ଳପକ୍ଷ । ତେଣୁ ଅପରାହ୍ନରେ ଖରା ଭାଙ୍ଗିଲେ, ମହାଜନମାନେ ଶରଣକୁଳ ଯିବାକୁ ସଜ ହୁଅନ୍ତି । ଧୀର ଚାଲିରେ ଗପସପ କରି ସୂର୍ଯ୍ୟ ରତରତହେବା ବେଳକୁ ବେଢାରେ ଯାଇ ପହଞ୍ଚନ୍ତି । ଚୁଡା, ନଡିଆ ଘିଅ ଓ ମସଲା କିଣାକିଣି କରି ଗୋଟିଏ ମସ୍ତ ଚୁଡାଘଷା ପାଗ ତିଆରି ହୁଏ । ତା ସାଙ୍ଗକୁ କଦଳୀ, ଆମ୍ବ ଓ ପଣସ ଫଳ । ସେସବୁ ଲଡୁବାବାଙ୍କ ପାଖରେ ସଂଧ୍ୟାଭୋଗ ଲାଗିହୁଏ । ନୟାଗଡ ଷୋଳଶାସନରୁ ଆମ ଭଳି ଅନ୍ୟ ଶାସନ ବ୍ରାହ୍ମଣମାନେ ମଧ୍ୟ ସେଠାରେ ଆସି ରୁଣ୍ଡ ହୁଅନ୍ତି ଓ ଭୋଗ ଲଗାନ୍ତି । ଭୋଗ ଖାଇସାରିବା ପରେ ଜହ୍ନ ରାତିରେ ଗାଁକୁ ଫେରୁ। ଫେରିବା ବାଟରେ ଆଖୁ ଭାଙ୍ଗି ଖାଉ ଓ ଗପସପରେ କେତେବେଳେ ଗାଁରେ ଆସି ପହଞ୍ଚିଯାଉ ଜଣା ପଡେନି । ସେ ଦିନର ପ୍ରସାଦ ସେବନ ଓ ଖୁସି ଅନୁଭୂତି ଭୁଲି ହୁଏନା ।

**ସରନ୍ତି ସୋମବାର - ଭିନ୍ନ ଅନୁଭୂତି**

ପଞ୍ଚ ଦେବତାଙ୍କ ପୂଜାର୍ଚ୍ଚନା ମଧ୍ୟେ
ଶିବପୂଜା ସୋମବାରେ ।
ଭକ୍ତିରେ ପୂଜିଲେ ସର୍ବସିଦ୍ଧିହୁଏ
ବିଶ୍ୱାସ ଥାଏ ମନରେ ।।
ବୈଶାଖ ମାସର ଶେଷ ସୋମବାର
ବଡ ପବିତ୍ର ଅଟଇ।

ଉପବାସ ରଖି ଏ ବ୍ରତ ପାଳିଲେ
ଯାହାମନାସିବ ପାଇ ।।
ଗ୍ରାମ ଲୋକନାଥ ଦେବଙ୍କ ପୀଠରେ
ପୂଜା ହୁଏ ପ୍ରତିନିତି ।
ବରଷକେ ଥରେ ସେଇ ସୋମବାରେ
ବାବାଙ୍କ ପୀଠଯାଆନ୍ତି ।।
ଶରଣକୁଳସ ଲଡ୍ଡୁବାବା ଲିଙ୍ଗ
ଲଭିଛି ରାଜ୍ୟ ପ୍ରସିଦ୍ଧି
କାହିଁ କେତେଦୂରୁ ଭକତ ଆସନ୍ତି
ପାଇବା ପାଇଁ କି ସିଦ୍ଧି ।।
ଗାଆଁ ମହାଜନେ ସନ୍ଧ୍ୟା ସମୟରେ
ବସନ୍ତି ବେଢା ଭିତରେ ।
ଚୁଡାଘସା ସହ ଆମ୍ବ ଓ କଦଳୀ
ଅର୍ପିତ ହୁଏ ଭୋଗରେ ।।
ଷୋହଳ ଶାସନ ମହାଜନ ମାନେ
ଗୁଣ୍ଡ ହୁଅନ୍ତି ସେଦିନ ।
ଉତ୍କଣ୍ଠାର ସହ ଚାହିଁରହୁ ଆମେ
କେବେ ଆସିବସେ ଦିନ ।।
ଫେରିବା ବେଳର ଅନୁଭୁତି ଯେତେ
ଏବେ ମନେପଡୁ ଅଛି ।
ଜହ୍ନ ରାତି ବେଳ କେତେ ଥଟ୍ଟାମଜା
ଚଗଲାମୀ ହୁଏ କିଛି ।।
ଥରେ ପର୍ବ ସାରି ଫେରିବା ବେଳକୁ
ପାତାଳେଶ୍ୱର ରାସ୍ତାରେ ।
ଦୁଇଜଣ କିଏ ଶୂନ୍ୟଗାଡି ଚଢି
ପଛୁ ଆସିଲେ ବେଗରେ ।।

ଗଛ ଛାଇତଳେ ଆମେ ଚାଲୁଥିଲୁ
ଦେଖାଯାଉ ନାହିଁ ବାଟ।
ଟୋକା ଦୁହିଁଙ୍କର ଉଚ୍ଛୃଙ୍ଖଳ ଦେଖି
ଆମ ମନେ ହେଲା ଭୀତ ।।
ଧସେଇ ଚାଲିଲେ ଆମ ପାଖ ଦେଇ
ଅନୁତାପ ମନେ ନାହିଁ।
ଭୟପାଇ ଆମେ ବିଚାରିଲୁ
ବଡଙ୍କୁ ମାନ୍ୟତା ନାହିଁ।।
ଶିକ୍ଷା ଦେବାପାଇଁ ମନରେ ଆସିଲା
ନାଟକ ରଚନା ହେଲା।
ଫେରାଦ କରିବା ତା'ବାପ ନିକଟେ
ସେ ଆମକୁ ଧକ୍କା ଦେଲା ।।
ଫକୀର ଡାକୁଆ ପୂର୍ଣ୍ଣ ମହାପାତ୍ର
ଲୋକନାଥ ମିଶ୍ର ସହ।
ଯେତେଜଣ ଥିଲେ ସଭିଏଁ କହିଲେ
ହେଇଯାଉ ଏକ ନ୍ୟାୟ ।।
ପୁନିଆ କାନ୍ଧକୁ ଧରିବ ଫକୀରା
ଛୋଟା ପରି ଚାଲୁଥିବ।
ବିନ୍ଧା ଛିଟିକାରେ ବୋବାଳି ଛାଡିବ
ପୁନିଆ ହେ ଫେରାଦ ଦେବ।।
ମାଳୀ ପିଲା ସିଏ ବଧିସାହି ଘର
ପୁନିଆ ମାଳୀ ଚିହ୍ନିଲା।
ନାଟକ ପ୍ରକାରେ ଫକୀର ଚାଲିଲା
ମାଆଲୋ ବାପଲୋ ହେଲା।।
ଅଭିଯୋଗ ଶୁଣି ବାପ ପୁଅ ଦୁହେଁ
ବଡ ଅପଦସ୍ତ ହେଲେ।

ପୁଅକୁ ତାଗିଦା କରି ବାପ ପୁଅ
କ୍ଷମା ଯାଚନା କରିଲେ ।।
ନାଟକ ସରିଲା ଗାଁକୁ ଫେରିଲୁ
ବହେ ହସାହସି ହେଲା ।
ଫକୀରାକୁ ପୂର୍ଣ୍ଣ କହେ ରେ ସେବକ
ମୋ'ସେବା ତୋତେ ମିଳିଲା ।।

**ଲୋକନାଥଙ୍କ ଚନ୍ଦନ ଯାତ୍ରା** – ସଂଧ୍ୟା ହେବା ମାତ୍ରେ ଆମେ ପିଲାମାନେ ସବୁ ଦେଉଳରେ ହାଜର । ପାଚିଲା ଆମ୍ବ ମିଳିବ । ତା ସାଙ୍ଗକୁ ଉଖୁଡା । ଠାକୁରଙ୍କ ନାଁରେ ଯେଉଁ ବଗାୟତ ଥିଲା, ସେଥିରେ ବହୁତ ଆମ୍ବଗଛ ଥିଲା । ସେ ଗଛର ନାଁବି ଥିଲା । ପେଜେଇ, ପାଉଁସିଆ, ଗୋଡିଖାତିଆ, ଗଉଡଆମ୍ବ ଇତ୍ୟାଦି। ସେ ଗଛ ଫଳ ବଡ ମିଠା । ଚନ୍ଦନ ଯାତ୍ରା ୨୧ ଦିନ ଧରି ପାଳିତ ହୁଏ । ସେଇଗଛର ଆମ୍ବ ଠାକୁରଙ୍କୁ ଭୋଗ ଲାଗି ହୁଏ ।

**ଶୀତଳଷଷ୍ଠୀ (ଦିଅଁବିଭା)** – ଜ୍ୟେଷ୍ଠ ଶୁକ୍ଳ ଷଷ୍ଠୀ ତିଥିରେ ଶିବପାର୍ବତୀଙ୍କ ମିଳନ ପର୍ବ ମହା ଜାକଜମକରେ ପାଳନ ହୁଏ । ଆମ ପାଇଁ ଆକର୍ଷଣ ରାତି ଭୋଜି । ପୂର୍ବଦିଗରେ ବିଜେ ଅଛନ୍ତି ଲୋକନାଥ ଠାକୁର ଓ ପଶ୍ଚିମରେ କଜଳେଇ ଠାକୁରାଣୀ । ଲୋକନାଥ ଦେବଙ୍କ ଚଳନ୍ତି ପ୍ରତିମା ବରବେଶରେ ବିମାନରେ (ଚଉଦଳ) ଆରୋହଣ ହୋଇ ଛତ୍ରୀତ୍ରାସ ସହ ମଶାଲ ଶୋଭାଯାତ୍ରାରେ ଠାକୁରାଣୀଙ୍କ ନିକଟକୁ ଯିବା ସମୟର ମନୋରମ ଶୋଭା ମନ କିଣି ନିଏ । ଢୋଲ, ମୃଦଙ୍ଗ ଘଣ୍ଟ କାହାଳୀ ଇତ୍ୟାଦି ବାଜାରେ ଗାଁ ଦାଣ୍ଡ ଦୁଲୁକି ଉଠୁଥାଏ । ଆମେ ପିଲାମାନେ ଘଣ୍ଟ ବଜାଇ ତା'ରି ତାଳରେ ନାଚ କଲାବେଳେ ମନରେ ଯେଉଁ ଆନନ୍ଦ ଦିଏ ତାହା ବର୍ଣ୍ଣନା କରିହେବନି । ଠାକୁର ଠାକୁରାଣୀଙ୍କ ପୀଠରେ ପହଞ୍ଚିବାପରେ ବିବାହ କାର୍ଯ୍ୟ ଚାଲେ । ଆମେ ଝାଳନାଳ ହୋଇ ଲାଇବ୍ରେରୀ ପଡିଆରେ ଜହ୍ନ ଆଲୋକରେ ଗପସପ ଖେଳକୁଦ କରି ଭୋଜି ବଢାହେବା ପର୍ଯ୍ୟନ୍ତ ଅପେକ୍ଷାକରୁ। ସେ ଭୋଜିରେ ଗହମ ଉଖୁଡା, ପାଚିଲା ଆମ୍ବ, ଚୁଡାଘଷା ଓ କଦଳୀ ରସାବଳୀ ପରଷା ଯାଏ । ସେ ଭୋଜିର ସ୍ୱତନ୍ତ୍ର ଆକର୍ଷଣ ହେଲା ପାରୁଶ । ସେ ଶବ୍ଦର ଅର୍ଥ କ'ଣ ସେତେବେଳେ ଜଣା ନଥିଲା ? ସାଙ୍କେତିକ ଢଙ୍ଗରେ ବ୍ୟବହାର ହେଉଥିବା ଶବ୍ଦର ଅର୍ଥ ପାର୍ଶ୍ୱ ମାନେ ଘରର କେହି ନଆସିଥିଲେ ତାଙ୍କ ପାଇଁ ପଠାଇବା

ବ୍ୟବସ୍ଥା । ସେଥିପାଇଁ ଭୋଜିରେ ଯୋଗଦେଇଥିବା ବ୍ୟକ୍ତିଙ୍କ ଖଲିରେ ପରଷା ଯାଉଥିବା ଦ୍ରବ୍ୟ ପାର୍ଶ୍ୱରେ ରଖଯାଇଥିବା ଢାଳରେ ବି ଦିଆଯାଏ । ତେଣୁ ଯିଏ ଯେତେ ବଡ ଢାଳ ଆଣିଥିବ ସିଏ ସେତେ ଅଧିକ ଦ୍ରବ୍ୟ ନେଇ ପାରିବ । ସେ ସମୟର ଘଟଣା ମନେପଡିଲେ ମନରେ କୌତୂହଳ ଜାତ ହେବା ସହ ଖୁସି ବି ଲାଗେ ।

**ଗହ୍ମା ପୂର୍ଣ୍ଣମୀ** – ଲୋକନାଥଙ୍କ ବେଢାରେ ମୃତ୍ତିକାରେ ଗହ୍ମା ଅସୁର ଗଢାହୋଇ ପୂଜାର୍ଚ୍ଚନାପରେ ତା'ର ବଧ କରାଯାଏ । ତା' ଶରୀରର ମାଟି ଟିକିଏ ପାଇବାପାଇଁ କେତେ କସରତ । ସେ ମାଟି ଗଛରେ ଦେଲେ କୁଆଡେ ଭଲ ଫଳ ଧରିବ । ପୁଣି ସନ୍ଧ୍ୟା ସମୟରେ ମକଦମଙ୍କ ମଣ୍ଡପରେ ଭିଡ । ହକରା ଭୋଗ ବଣ୍ଟନ ବ୍ୟବସ୍ଥା । ଘରପିଛା ଗୋଟିଏ ସରା ଭୋଗ । ତା'ଭିତରେ ନଡିଆ, କାକେରା, ସାକର ଇତ୍ୟାଦି ।

**ଦଶହରା** – ଶୀତଳଷଷ୍ଠୀ ପର୍ବ ଭଳି ଦଶହରାର ନବମୀ ପର୍ବକୁ ଆମେ ଚାହିଁ ରହିଥାଉ । କାରଣ ଏ ପର୍ବରେ ଠାକୁରାଣୀ ଶଙ୍ଖୁଡିଭୋଗ ଲାଗି ହୁଅନ୍ତି । ଏ ଭୋଜିକୁ ଆମେ ଜନ୍ତାଳ କହିଥାଉ । ଖେଚେଡି ସାଙ୍ଗକୁ ଘାଣ୍ଟ ତରକାରୀ ଓ ସେଥିରେ ପୁଣି ମାଂସ ଘାଣ୍ଟ । ଯେଉଁବର୍ଷ ବେଶି ଯାଚଞ୍ଚା (ମାନସିକ) ସେ ବର୍ଷ ସେତିକି ବୋଦା ବଳି ଓ ଭୋଜିର ମଜା ବେଶି ।

**ଦୋଳଯାତ୍ରା** – ଠାକୁର ଝୁଲାରେ ଝୁଲନ୍ତି । ଆମର ଆଗ୍ରହ ମୁଆଁଖିଆ କଞ୍ଚାଆମ୍ବ, ଚଣା ଓ ମୁଆଁ ଭୋଗ ଲାଗିହେବା ପରେ ବଣ୍ଟା ହୁଏ । ରାତି ମଜା ତ ନିଆରା । ଠାକୁରଙ୍କ ଚଳନ୍ତି ପ୍ରତିମା ରାତିରେ ବିମାନାରୂଢ ହୋଇ ଗ୍ରାମ ପ୍ରଦକ୍ଷିଣ କରନ୍ତି । ଘଣ୍ଟ ଖୋଳ କାହାଳୀ ବାଦ୍ୟରେ ଗାଁ ଦାଣ୍ଡ ଦୁଲୁକି ଉଠେ । ଫଗୁ ଖେଳ ସହିତ ଭୋଗ ପାଇବାର ଖୁସି ଆଜିବି ମନେପଡେ ।

## ପର୍ବ ପର୍ବାଣୀ

ବାବା ଲୋକନାଥ ଦେବ ଓ ଠାକୁରାଣୀଙ୍କ ବିଭିନ୍ନ ପର୍ବପର୍ବାଣୀ ଗାଁ ଟ୍ରଷ୍ଟି ବୋର୍ଡଙ୍କ ନିଷ୍ପତ୍ତି ଓ ତତ୍ତ୍ୱାବଧାନରେ ପାଳିତ ହୁଏ । ଠାକୁରଙ୍କ ସମ୍ପତ୍ତି କହିଲେ ଚାଷଜମି । କେଉଁ କାଳରୁ କିଛି ବଦାନ୍ୟ ବ୍ୟକ୍ତିଙ୍କ ଅନୁଗ୍ରହରୁ ସେ ଜମି ଠାକୁରଙ୍କ ମାଲିକାନାରେ ରହିଚି । ଦୈନନ୍ଦିନ ନୀତି, ନୈବେଦ୍ୟ ଅର୍ଚ୍ଚନା ମନ୍ଦିରର ରକ୍ଷଣା

ବେକ୍ଷଣ ଆଦି ଯାହା ଖର୍ଚ୍ଚ ହୁଏ, ସବୁ ସେଇ ଚାଷ ଆୟରୁ ଭରଣା ହୁଏ । ମାଳୀ, ପୂଜାରୀ, ଘଣ୍ଟୁଆ, କାହାଳିଆ, ଚଉଦଳ, ଛତି ତ୍ରାସ, ଧରିବା ଏପରି ଅନେକ ସେବା ପ୍ରଦାନକାରୀଙ୍କ ପାଇଁ ଜମି ଖଞ୍ଜା ହୋଇଥାଏ । ଭୋଗ ଲଗାଇବା ଦାୟିତ୍ୱ ମାଳୀ ଓ ପୂଜାରୀଙ୍କର ।

ପିଲା ବେଳର କଥା । ମନ୍ଦିରକୁ ଯିବାକୁ ଆଗ୍ରହ ଥାଏ କେବଳ ଭୋଗ ପାଇବା ପାଇଁ । ତେଣୁ ପୁଣ୍ୟ ପର୍ବ ଦିନକୁ ଆମେ ଚାହିଁ ରହିଥାଉ ।

**ଠାକୁରାଣୀ ମନ୍ଦିର**



ଗାଁର ପୂର୍ବ ଦିଗରେ ଶ୍ରୀଶ୍ରୀଶ୍ରୀ ଲୋକନାଥ ଦେବ ଓ ପଶ୍ଚିମ ଦିଗରେ ଦେବୀ ପାର୍ବତୀ (କଜଳେଇ ଠାକୁରାଣୀ)ଙ୍କ ମନ୍ଦିର ଆମ ପୂର୍ବଜ ପ୍ରତିଷ୍ଠା କରିଥିଲେ । ସମ୍ବଳ ଅଭାବରୁ ମନ୍ଦିର ତୋଳାଇ ପାରିଲେ ନାହିଁ । କିନ୍ତୁ ବଡକୁଟୁଣି ଗ୍ରାମର ୯ଉତ୍ସବ ପାତ୍ର ନିଜ ଉଦ୍ୟମରେ ଲୋକନାଥଦେବଙ୍କ ପାଇଁ ଦେଉଳ ତୋଳାଇଲେ ଯାହାକି ଏବେ ସୁଦ୍ଧା ଅଛି । ଠାକୁରାଣୀଙ୍କ ମନ୍ଦିର ତୋଳିବାପାଇଁ ଯଦିଓ ଉଦ୍ୟମ ଜାରିରଖିଥିଲେ, ଆବଶ୍ୟକ ପରିମାଣର ଅର୍ଥାଭାବରୁ ବହୁକାଳଧରି ତୋଳା ହୋଇପାରିଲାନାହିଁ । କିନ୍ତୁ ଦେବୀଙ୍କ ଆସ୍ଥାନ ଚତୁଃପାର୍ଶ୍ୱରେ ପୁନାଦି ପକାଇ ମା'ଙ୍କ ପାଇଁ ଆସ୍ଥାନ ଓ ମୁଣ୍ଡ ଉପରେ ଚାଳ ଓ ସମୟକ୍ରମେ ଟାଇଲ୍ ଛପର ହୋଇ ସେ ପୂଜା ପାଉଥିଲେ । ସଂଯୋଗକ୍ରମେ, ଥରେ ଆମେ ନାଗଝର କୂଳ ଶିମିଳିଝରଠାରେ ଏକ ବଣଭୋଜିର ଆୟୋଜନ କରିଥିଲୁ । ସେଇ ଅବସରରେ ଯେତେବେଳେ ଗାଁର ଉନ୍ନତିମୂଳକ କାର୍ଯ୍ୟ ବିଷୟରେ ଆଲୋଚନା ହେଲା, ଏକ ପ୍ରସ୍ତାବ ଅସିଲା ଯେ, ଆମ ପୂର୍ବଜ ଯେଉଁସବୁ ଗ୍ରାମମଙ୍ଗଳ କାର୍ଯ୍ୟ କରିଗଲେ ସେସବୁର ଉପଭୋଗ କରୁଚେ ଓ ଆମେ ସେଥିପାଇଁ ଗର୍ବ କରୁଚେ

ଅବଶ୍ୟ, କିନ୍ତୁ ଉପଯୁକ୍ତ ରକ୍ଷଣାବେକ୍ଷଣ କିମ୍ବା ଉନ୍ନତିକରଣ ନହେବାରୁ ସେସବୁର ଅବକ୍ଷୟ ଘଟୁଚି। ଆମେମାନେ ସେସବୁ ପ୍ରତି ବିଶେଷ ଧ୍ୟାନ ଦେଉନେ । ବିଶେଷକରି ଯେଉଁ ଦେବୀମାତାଙ୍କ ଆଶୀର୍ବାଦରେ ଆମେ ସମସ୍ତେ ସଫଳତା ଅର୍ଜନ କରିଅଛେ, ତା'ର ପ୍ରତିବଦଳରେ ସେଇ ମାଆଙ୍କ ପାଇଁ ଏକ ସ୍ଥାୟୀ ଆସ୍ଥାନ କରିବାରେ ଚିନ୍ତା କରିନେ। ଆଜି ଏଇ ଶୁଭାବସରରେ ଚାଲ ସଙ୍କଳ୍ପ କରିବା ଯେ, ମାଆଙ୍କପାଇଁ ଏକ ମନ୍ଦିର ଗଢ଼ିବା । ସେଇ ଦିନରୁ ହିଁ ସମସ୍ତଙ୍କ ମନରେ ଯେଉଁ ପ୍ରେରଣା ଜାଗ୍ରତ ହେଲା, ତା'ରି ଫଳସ୍ୱରୂପ ତିନି ବର୍ଷ ମଧ୍ୟରେ ଏକ ସୁନ୍ଦର ଦେଉଳ ଗଢ଼ିଉଠିଲା । ସେ ଉଦ୍ୟମରେ ଶ୍ରୀ ଚନ୍ଦ୍ରଶେଖର ମାହାପାତ୍ର ମୁଖ୍ୟ ଭୂମିକା ତୁଲାଇ ଥିବାରୁ ସେ ସଫଳତାର ଶ୍ରେୟ ତାଙ୍କୁ ହିଁ ଯିବ ।

**କଜଳେଇ ଠାକୁରାଣୀ**

ମାଆଙ୍କ ଆଶିଷ ପାଇ ଗ୍ରାମବାସୀ କଲେ ବିଚାର ବିମର୍ଷ ।
ସୁରମ୍ୟ ସୁନ୍ଦର ମନ୍ଦିର ଗଢ଼ିବା ଦେଖିଲେ ଲାଗିବ ହର୍ଷ ।।
ବାକ୍ୟବାଣ ଟାଣ ନାହିଁ ପରିସୀମା ଆଗକୁ ଆସୁ ନାହାନ୍ତି।
ପ୍ରସ୍ତାବ ଅନେକ ସମାଧାନ ବାଟ ଜଣେ କେହି ନ ଦିଅନ୍ତି ।।
ଅଟକଳ ହେଲା ନାହିଁ ଅର୍ଥ ବଳ ଚିନ୍ତା ସଭିଙ୍କ ମନରେ।
କଥାରେ କହନ୍ତି ବୁଦ୍ଧି ଥିଲେ ବଳ ପହଞ୍ଚିଯାଏ ପାଖରେ ।।
ଭଲ କାମ କଲେ ସମସ୍ୟା ଅନେକ ହେଲେବି ନାହିଁ ଶୋଚନା।
ଗ୍ରାମ ଦେବତୀଙ୍କ ଆସ୍ଥାନ କଥାତ ତେଣୁ ମନରେ ଭାବନା ।।
ସେତୁ ବନ୍ଧ ପାଇଁ ଗୁଣ୍ଡୁଚି ମୂଷାର କେତେ ବଡ ଅବଦାନ।
ଅଳପ ବହୁତ ବିଚାର ନ କରି ସଂଗୃହୀତ ହେଲା ଦାନ ।।
ଭକ୍ତି ପୂତ ମନେ ନିଷ୍ଠା ଓ ସିଦ୍ଧାନ୍ତ ମାଆର କୃପା ବର୍ଷିଲେ।
ମନୋରଥ ସିଦ୍ଧ ନ ହେବକି ଆଉ ସର୍ବେ ସହଯୋଗ କଲେ ।।
ମନ୍ଦିରର ଶୋଭା ଅତି ମନୋରମ ତହୁଁ ବଳି ଗର୍ଭଗୃହ।
ମାଆର ଆସ୍ଥାନେ ଆଖି ଲାଖି ରହେ ଶିହରି ଉଠଇ ଦେହ ।।
ଭକତି ଜଣାଉ ତୁମ ପାଦତଳେ କଜଳେଇ ଠାକୁରାଣି।
ତୁମ ଶୁଭ ଦୃଷ୍ଟି ସଦା ପଡୁଥାଉ ସଦା ମଙ୍ଗଳ କାରିଣୀ ।।

## ମହୁଲେଇଠାକୁରାଣୀ

ମାଆଗୋ ମହିମାମୟୀ　　　　　ଦେବୀରୂପ ମହୁଲେଇ ।
ଆମେ ହେଲୁ ଭାଗ୍ୟବାନ　　　ତୁମ ଦରଶନ ପାଇ ।।
କଜଲେଇପଲ୍ଲୀ ଗ୍ରାମ　　　ଅପନ୍ତରା ଉପାନ୍ତରେ ।
ସ୍ୱଇଛାରେ ପ୍ରକଟିଲ　　　ନାଳକୂଳ ପ୍ରାନ୍ତରରେ ।।
ମହୁଲ ବୃକ୍ଷ ଆଦରି　　　ଫୁଟି ଉଠିଲ ତା'ମୂଳେ ।
ଦେଖିସେ ରୂପ ଶୋଭାକୁ　　　ସର୍ବେ ଚକିତ ହୋଇଲେ ।।
ମହୁଲେଇ ଠାକୁରାଣୀ　　　ନାମରେ ହେଲ ଚର୍ଚ୍ଚିତ ।
ପ୍ରତିଷ୍ଠା ଯଜ୍ଞ କରାଇ　　　ଆରତେ ଡାକିଲେ ଭକ୍ତ ।।
ଖୋଳ କରତାଳି ସହ　　　ବାଜିଲା ଘଣ୍ଟ କାହାଳୀ ।
ବଜାଇ ପୂଜିଲେ ତୋତେ　　　ରଖିଲେ ତୋ' ପାଦେ ଅଳି ।।
ଏ ଅଞ୍ଚଳ ବାସୀଙ୍କର　　　ସୁଖ ଶାନ୍ତି ମୈତ୍ରୀ ଭାବ ।
ତୋର ଶୁଭ ଦୃଷ୍ଟିପଡୁ　　　ହୋଇବ ସବୁ ସମ୍ଭବ ।।
ବେଲୁବେଳ ଚତୁର୍ଦ୍ଦିଗେ　　　ମହିମା ହେଲା ପ୍ରସାର ।
ମନାସୀ ଭକ୍ତ ଅର୍ପିଲେ　　　ବଳିଭୋଜାର ସମ୍ଭାର ।।



ପିଲାଙ୍କ ଶୁଭ କାମନା କରି ଗାଆଁ ମାଆମାନେ।
ମନାସିଲେ ଶୁଭଚଣ୍ଡି ଓଷା ବ୍ରତ ତାଙ୍କମନେ।।
ତୁମପଦ ସେବା ପାଇଁ ଗ୍ରାମ ସନାତନ ସେଠୀ।
ଅନାଶକ୍ତ ଭକ୍ତିଭାବ ପୂଜା ଆରମ୍ଭିଲା ଏଠି।।
କେତେ ନାରୀ ତୋ ଆଶିଷ ପାଇ ହେଲେ ପୁତ୍ରବତୀ।
ସ୍ୱମୀ ପରିବାର ସହ ହସ ଖୁସିରେ ଅଛନ୍ତି।।
ମାଆଗୋ ମମତାମୟୀ କ୍ଷମା ଦୟା ପ୍ରଦାୟିନୀ।
ପ୍ରଣତୀ ଜଣାଉ ସର୍ବେ ଭକ୍ତ ମଙ୍ଗଳ କାରିଣୀ।।



# ଲୋକକଳା ଓ ଚିତ୍ତବିନୋଦନ

ଗାଁରେ ମଞ୍ଚସ୍ଥ କରାଯାଇଥିବା ନାଟକ ମଧ୍ୟରେ ପ୍ରଥମ ନାଟକ ମୁଁ ହେତୁପାଇବା ପୂର୍ବରୁ ମଞ୍ଚସ୍ଥ ହୋଇଥିବା କଥା ଶୁଣିଥିଲି । କବିରାଜ ଜଗନ୍ନାଥ ରଥଙ୍କ ଶାଳକ ଖଣ୍ଡପଡା ନିବାସୀ ଜୟକୃଷ୍ଣ ମିଶ୍ର ଆମ ଗାଁକୁ ପ୍ରାୟ ଆସୁଥାନ୍ତି । ତାଙ୍କରି ପ୍ରେରଣା ଓ ଉଦ୍ୟମରେ ଏକ ନାଟକ ମଞ୍ଚସ୍ଥ ହୋଇଥିଲା । ତେବେ ଆମ ସମୟର କଥା । ପ୍ରଫୁଲ୍ଲ ଭାଇନା ଖରାଛୁଟିରେ ଆସି ଆମମାନଙ୍କୁ ଏକ ନାଟକ କରିବାକୁ ଉତ୍ସାହିତ କରିଥିଲେ । ଆମେ ସ୍କୁଲ୍ ପିଲାମାନେ ତାଙ୍କ କଥାରେ ଆଗ୍ରହପ୍ରକାଶ କରି ଏକ ନାଟକ ମଞ୍ଚସ୍ଥ କରିବାପାଇଁ ବିଚାର କଲୁ । ଅବଶ୍ୟ କଳା ପରିବେଷଣ କରିବା ପ୍ରେରେଣାର ଉତ୍ସ ଥିଲେ ଆମ ଗାଁ ପଞ୍ଚାୟତର ଗ୍ରାମସେବକ ୰ସଂସାରୀ ଲେଙ୍କା । କଳାରେ ରୁଚି ରଖିଥିବା ସେ ମହାଶୟ ଆମକୁ ସବୁ କ୍ଷେତ୍ରରେ ପ୍ରେରଣା ଦେଉଥିଲେ । ତାଙ୍କର କହିବାକଥା ହେଲା ଏ ସଂସାରରେ ଜନ୍ମ ନେଇଥିବା ପ୍ରତ୍ୟେକ ବ୍ୟକ୍ତି ଜଣେ କଳାକାର । ତା' କଳାର ଉତ୍କର୍ଷ ଓ ଆଦର ଦର୍ଶକଙ୍କ ନିକଟରେ ପହଞ୍ଚିବାରେ ହିଁ ତା'ର ସନ୍ତୁଷ୍ଟି । ସେତେବେଳର ଗାଁ ପରିବେଶ ଓ ବିଶେଷକରି ଆମଗାଁର ଭିତ୍ତିଭୂମି କଥା ବିଚାର କଲେ କିଛି ସୁବିଧା ନଥିଲା । ମୁଖ୍ୟ ବାଧକ ଆଲୋକର ବ୍ୟବସ୍ଥା । କାରଣ ଆଜିର ପରି ସେତେବେଳେ ବିଜୁଳି ଆଲୁଅ ନଥିଲା । ଭୋଜିଭାତ, ମେଳା ମହୋତ୍ସବ କିମ୍ବା ନାଟକ, ଯେକୌଣସି ଜନ ସମାଗମ ହେଉ ପେଟ୍ରୋମାକ୍ସ ଆଲୁଅ ହିଁ ଭରସା ।

ପ୍ରଥମ ନାଟକ, ଅଭିଜ୍ଞତା ନାହିଁ, ନାଟକ ମଞ୍ଚସ୍ଥ କରିବା ପାଇଁ ଅଭିନେତା ଚୟନ, ମଞ୍ଚ ଓ ଆନୁସଙ୍ଗିକ ସରଞ୍ଜାମ କିପରି ସବୁ ବ୍ୟବସ୍ଥା ହେବ, ତା'ପାଇଁ ଆମେ କୁନ୍ତିନାନୀଙ୍କ ସ୍ୱାମୀ ବରଢିର ଭାଗୀରଥି ମିଶ୍ରଙ୍କ ସହ ଯୋଗାଯୋଗ କରିବାରେ

ତାଙ୍କରି ସାହାଯ୍ୟ ଓ ନିର୍ଦ୍ଦେଶନାରେ ନାଟକଟି ମଞ୍ଚସ୍ଥ ହୋଇପାରିଥିଲା । ତା'ପରେ ବାଣ ହରଣ, ଚକ୍ରି ଇତ୍ୟାଦି ଆଉ କେତେକ ନାଟକ ଓ ଏକାଙ୍କିକା ମଞ୍ଚସ୍ଥ କରି ପିଲା ମାନଙ୍କର ଅନ୍ତର୍ନିହିତ କଳାର ପରିସ୍ଫୁଟନ କରିପାରିଥିଲୁ ।

ଗାଁର ଲଡୁଆ ବେହେରା ଜଣେ କଳାକାର । କଳାରେ ରୁଚି ଥିବା ହେତୁ, ସେ ବିଭିନ୍ନ ଯାଗାକୁ ଯାତ୍ରା ଦେଖିବାକୁ ଯାଇ ନାଟ୍ୟକାର ମାନଙ୍କସହ ସମ୍ପର୍କ ରଖିଥାଏ । ନିଜେ ହାରମୋନିୟମ ଧରି ସୁର ଧରିବା ସହ ଅନ୍ୟାନ୍ୟ ବାଦ୍ୟଯନ୍ତ୍ର ବଜାଇ ଗାଁପିଲାମାନଙ୍କୁ ଶୁଣାଏ ଓ ଏକ ନାଟ ଦଳ ଗଢ଼ିବା ପାଇଁ ଉତ୍ସାହିତ କରୁଥାଏ । ପ୍ରଥମେ ସେ କୁଟୁଣି ଯାଇ ପିଲାମାନଙ୍କ ମେଳରେ ନାଟ ଶିଖାଇବାରେ କୃତକାର୍ଯ୍ୟ ହେବାପରେ କୁଟୁଣୀର ଅଭିଜ୍ଞତାକୁ ନେଇ ଆମ ଗାଁରେ ଗୋଟିଏ ନାଟ ଦଳ ଗଠନ କରିବାକୁ ମନସ୍ଥ କଲା । ସବୁ ପିଲାମାନେ ଦିନରେ ତ ନିଜ ଧନ୍ଦାରେ ଯାଆନ୍ତି । ରାତି ସମୟରେ ହିଁ ଯାହାକିଛି କରିପାରିବେ । ସେ ସମୟରେ ସାମାଜରେ ନାଚ ଗୀତ ପ୍ରତି ଅଭିଭାବକମାନଙ୍କର ସ୍ୱୀକୃତୀ ନଥିଲା । ସେଇ ପରିପ୍ରେକ୍ଷୀରେ ନାଟ ଶିଖିବା ପାଇଁ ଘରର ଆକଟ ଥିଲା । ତା' ସହିତ ଗାଁର ଅଧିକାଂଶ ପିଲା ବିଦ୍ୟାଳୟ ପିଣ୍ଡା ମାଡି ନଥିବାରୁ ବହି ପଢ଼ି ଜାଣିନଥିଲେ । ତଥାପି ପିଲାମାନେ ଯେତେବେଳେ ଉତ୍ସାହ ଦେଖେଇଲେଣି, ଲଡୁଆ ଏକ ସୁଚିନ୍ତିତ ଯୋଜନା କଲା । ପ୍ରଥମେ ପୌରାଣିକ ନାଟ ପରିବେଷଣ କରି ଲୋକମାନଙ୍କର ମନ କିଣିବାକୁ ନିଷ୍ପତ୍ତି ହେଲା । ଯେଉଁମାନେ ଅକ୍ଷର ଶିଖି ନାହାନ୍ତି, ସେମାନେ ଅନ୍ୟ ସାଙ୍ଗଠାରୁ ଶୁଣି ନିଜ ସଂଳାପ ମନେରଖିବେ । ଗୁରୁଙ୍କ କଠିନ ପରିଶ୍ରମ ଓ ନିର୍ଦ୍ଦେଶନାରେ ରାମଲୀଳା ନାଟକ ପ୍ରଥମ ଅର୍ଘ୍ୟରୂପେ ଗାଁ ଯାତ୍ରାରେ ପରିବେଷଣ କରି ଦର୍ଶକମାନଙ୍କୁ ମୁଗ୍ଧ କରିଦେଲେ । ତା'ପରେ ସେମାନେ ଆଉ ପଛକୁ ଫେରି ଚାହିଁନାହାଁନ୍ତି । ବହୁ ପୌରାଣିକ, ସାମାଜିକ ନାଟକ ପରିବେଷଣ କରି ଅଞ୍ଚଳରେ ସୁନାମ ଅର୍ଜନ କରିପାରିଲେ । ଏବେ ମଧ୍ୟ ଗାଁରେ ନାଟକ ଦଳ ସକ୍ରିୟ ଥାଇ ନାଟ ପରିବେଷଣ କରୁଛନ୍ତି । କହିବାର ତାତ୍ପର୍ଯ୍ୟ ଏହି କି, ମାଟିଆ ବାରିକ, ଭଗବାନ ବେହେରା ପରି ଅନେକ ପିଲା ଅକ୍ଷର ନ ଚିହ୍ନି ମଧ୍ୟ ହନୁମାନ, ମାରୀଚ ପରି କେତେକ ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ନିଖୁଣ ଚିତ୍ର ପରିସ୍ଫୁଟନ କରିବାରେ ସଫଳ ହୋଇପାରିଥିଲେ ।

ଏପରି ଏକ ଅଜଣା ଅପହଞ୍ଚ ଗାଁରେ ନିତ୍ୟ ବ୍ୟବହାରଯୋଗ୍ୟ ଜିନିଷ ମିଳେନାହିଁ । ପାଖ ଗାଁ ଉଛବ ପାତ୍ରଙ୍କ ଦୋକାନରୁ ସଉଦା ଆସେ । କିନ୍ତୁ କେବେ କେମିତି ବୁଲା ବିକାଳିମାନେ ଲୁଗା ପଟା, ମନୋହରୀ ପସରା ଆଣି ଖୋଲିଦେଲେ, ଦେଖ ଗହଳି । ସମସ୍ତଙ୍କ ମନରେ ଉତ୍କଣ୍ଠା । ଯେଉଁଦିନ ଶତ୍ରୁଘ୍ନ କଂସା, ପିତଳ ବାସନ ଆଣି ଗାଁ ମଝିରେ ପସରା ମେଲାଇଦିଏ, ସେ ଦୃଶ୍ୟ ଦେଖିଲେ ଭାରି ମଜା ଲାଗେ । ଅନ୍ୟ ଏକ ଆକର୍ଷଣ ହେଲା ମିଠା ଚିନାବାଦାମ ଖଜା ଓ ବାରମଜା । ସେ ଫେରିବାଲାର ପ୍ରଚାର କରିବାର ଢଙ୍ଗ ନିଆରା । ମଧୁର ଶ୍ରୁତିର ସଙ୍ଗୀତ ସହ ଅଙ୍ଗଭଙ୍ଗୀ ଦେଖିଲେ ପାଖ ଛାଡିବାକୁ ଇଛା ହୁଏନାହିଁ ।



# ଭୋଜିଭାତ

ଯୋଡିଏ ପଇସା ବୋଡିଏ ଚାଉଳ । ଶୁଣିବାକୁ କେମିତି ଅଡୁଆ ଲାଗୁଚି । ଆମର ଭୋଜିର ଗୁପ୍ତ ମନ୍ତ୍ର । ଇଚ୍ଛା ହେଲା ଆଜି ଭୋଜି ହେବ । ଦି' ପଇସା ଚାନ୍ଦା ଓ ଘରୁ ବୋଡେ ଚାଉଳ । ପଞ୍ଚାୟତ ଅଫିସ ସାମନା ଚାନ୍ଦିନୀ ଉପରେ ଭୋଜି । ନାହିଁ ମନରେ ଆବିଳତା କିମ୍ବା ଶଙ୍କା । ଭାତ ଡାଲି ଘାଣ୍ଟ ତିଅଣ ସାଂଗକୁ ଚୁନା ମାଛ ଛୁଙ୍କ । ଏମିତି ତାସ ଖେଳୁଖେଳୁ କେବେ ମୁଢି ନଡିଆ ତ କେବେ ପୁରି ଡାଲମା । ମହୁଲେଇ ଠାକୁରାଣୀଙ୍କ ପ୍ରାଙ୍ଗଣରେ ଛଅ ଅଣା ଦୁଇପଇସା ଚାନ୍ଦାରେ ଯେଉଁ ଭୋଜି କରାଯାଇଥିଲା ସେ ସ୍ମୃତି କିନ୍ତୁ ଭୁଲିହେଉନି । ବୁଢା ଭାଇନା, ଟୁନା, ଜଟିଭାଇନା, ଚନ୍ଦ୍ରଭାଇନା, ସୁବାସ ମୁଁ ଓ ଆଉ କେତେଜଣ ମିଶି ମିଠାଭାତ (କାନିକା), ଡାଲି, ତରକାରି, ମାଂସ, ଓ ପାୟସର ଆୟୋଜନ ହେଲା । ଅନ୍ଧାର ରାତି ଲଂଠଣ ଆଲୁଅର ସାହାରା ନେଇ ଭୋଜି କରିବା ଓ ସାଙ୍ଗମାନଙ୍କର ମଜା ମଜା କଥା ।

### ରୋଚକ ଘଟଣାବଳୀ

ହରିଣ ଶିକାର – ଗାଁ ଉତ୍ତର ସାହିର ପଶ୍ଚିମ ଦିଗରୁ ପ୍ରଥମ ଘର ବୀର ସେଠୀର । ଆର୍ଥିକ ପରିସ୍ଥିତି ସ୍ୱଚ୍ଛଳ ନଥିବରୁ ଝାଟିମାଟି ଘର ଖଣ୍ଡେ କରି ତାଟିକବାଟ ଲଗାଇ କୈଣସି ପ୍ରକାରେ ମୁଣ୍ଡ ଗୁଂଜିଥାଏ । ଦିନକର ଘଟଣା । ରାତିରେ ଗୋଟଏ ହରିଣ ଗାଁମୁହାଁ ହେଇ ଆସିଲା ଓ ବୀରସେଠୀର ଘରେ ପଶିଗଲା । ତାଙ୍କ ଘରଲୋକ ଭୟଭୀତ ଅବସ୍ଥାରେ ବାଡିପଟେ ରାତି କାଟିଲେ ? ସକାଳ ପାହିବାବେଳକୁ ଗାଁସାରା ଚହଳ । ହାଡୁବନ୍ଧୁ ମିଶ୍ର ତାକୁ ନିଜ ବନ୍ଧୁକରେ ମାରିବାରେ ଲୋକ ଆଶ୍ୱସ୍ତି ହେଲେ ।

ବାଈଆଘର ଗୁହାଳରୁ ହେଟାବାଘ ଛେଳିଛୁଆ ଉଠାଇ ନେବା ଘଟଣା ସମସ୍ତଙ୍କୁ ସ୍ତମ୍ଭୀଭୂତ କରିଥିଲା । ଅନ୍ୟ ଏକ ଘଟଣାକ୍ରମରେ, ବାଈଆଭାଇନା ସକାଳୁ ସକାଳୁ ଗାଁମୁଣ୍ଡ ଚଉଦମାଣ କୁଦିଆପାଖ ତାଙ୍କ ତଇଲା ବୁଲି ଯାଇଥିବା ସମୟରେ ଗୋଟିଏ କଲରାପତ୍ରି ଆକ୍ରମଣ କରି କ୍ଷତବିକ୍ଷତ କରିଥିଲା । ଏପରି ଅନେକ ଘଟଣା ପ୍ରତିଦିନ ଘଟିଛି । ଏସବୁ ଘଟଣା ଶୁଣିଲେ ଗାଁର ଅବସ୍ଥିତି କେତେ ଅଗମ୍ୟ ଓ ଅପହଞ୍ଚ, ସେ ବିଷୟ ସହଜରେ ଅନୁମାନ କରିହୁଏ ।

## ମାଛଧରା ମଜାକ

ନାଗଝରନଦୀର ସ୍ରୋତ କ୍ଷିପ୍ର ଓ ପ୍ରଖର ହେତୁ ବଡମାଛ ପ୍ରାୟ ନଥାନ୍ତି । ଯେଉଁ କେତେକ ଛୋଟ ପ୍ରଜାତିର ମାଛ ବଢନ୍ତି, ତା'ମଧ୍ୟରୁ ସେରେଣା ମାଛର ସ୍ୱାଦ ଭିନ୍ନ । ଦେଖିବାକୁ ପୋହଳା ମାଛ ଆକୃତିର କିନ୍ତୁ ସାମାନ୍ୟ ଚେପଟା, ପେଟପାଖ ଓସାରିଆ ଓ ପିଠିଟା କଳା ।

ମାଛ ଧରିବା କେତେଜଣଙ୍କ ନିତିଦିନିଆ ବ୍ୟବସାୟ । କିନ୍ତୁ ଆମ ପାଇଁ ମଜା ଓ କେବଳ ସଉକ ମାତ୍ର । ଆମ ଗାଁର ପ୍ରାୟ ସମସ୍ତେ ଶିମିଳି, ପୁନିପଡା ଓ ଗୋଛା ନିକଟସ୍ଥ ପଦାରେ ଅର୍ଥକରୀ ଫସଲରୂପେ କିଛି ବାଇଗଣ ଚାଷ କରିଥାନ୍ତି । ସେ ଫସଲକୁ ମାଙ୍କଡ. ହରିଣ, ଠେକୁଆ ଇତ୍ୟାଦି ବଣଜନ୍ତୁଙ୍କ ଦାଉରୁ ରକ୍ଷାକରିବାକୁ ଜଗୁଆଳି ନିୟୋଜିତ କରାଯାଏ ଯିଏକି ସକାଳୁ ଯାଇ ସନ୍ଧ୍ୟାରେ ଫେରେ । ପଦାରେ ଗୋଟିଏ ଅସ୍ଥାୟୀ କୁଡିଆ କରାଯାଇ ତା'ଭିତରେ ଚାଷୋପଯୋଗୀ ସରଞ୍ଜାମର ସୁରକ୍ଷା ସହ ଜଗୁଆଳିର ବିଶ୍ରାମ ପାଇଁ ଗୋଟିଏ ଭାଡିଆ ବି କରାଯାଇଥାଏ । ଛୁଟିଦିନ ହେଲେ, ଆମେ ସାଙ୍ଗମାନେ ମିଶି ଭୋଜି କରିବାକୁ ସେଇ ପଦାକୁ ଯାଉ ଓ ସେ କୁଡିଆରେ ବିଶ୍ରାମ ନେଉ । ଭୋଜି ମାନେ ଭାତ ଡାଲମା । ତା' ସାଙ୍ଗକୁ ନାଗଝର ନଦୀର ମାଛ ତରକାରୀ । ସେଇ ମାଛ ଧରାର ପ୍ରଣାଳୀ ଓ ଅଭିଜ୍ଞତା ଏକ କୌତୂହଳପୂର୍ଣ୍ଣ । ଭାରି ମଜା ଲାଗେ । ବୁଢାଭାଇନା, ଜଟିଭାଇନା, ସୁବାସ, ଚନ୍ଦ୍ର ଭାଇନା ଟୁନା ଓ ଆଉ କେତେଜଣ ଆମ ଦଳରେ ସାମିଲ ଥାଆନ୍ତି । ମାଛଧରାରେ ଚନ୍ଦ୍ରଭାଇନାର ନିର୍ଦ୍ଦେଶନା କ୍ରମେ ସବୁ କାମ ହୁଏ ।

ସେରେଣା ମାଛ ଭାରି ତରକା । କେବଳ ଗଣ୍ଡ ଓ ସ୍ଥିର ଜଳରେ ରୁହନ୍ତି । ତେଣୁ ସେଇ ନିର୍ଦ୍ଦିଷ୍ଟ ଜାଗାକୁ ସନ୍ଧାନ କରିବା ହିଁ ମୁଖ୍ୟ କାମ । ଯେଉଁଠାରେ ନଦୀର ଶଯ୍ୟା ଓସାରିଆ ଓ ବର୍ଷାଦିନ ଚାଲିଯିବାରୁ କୂଳରୁ ପାଣି ଦୂରେଇ ଯାଇଚି କିନ୍ତୁ ଗଣ୍ଡରେ ପାଣି ରହିଚି, ସେପରି ଏକ ଜାଗା ନିର୍ଦ୍ଧାରିତ ହୁଏ । ନଦୀର ଧାରକୁ ପୁନର୍ବାର ସେଇ ଗଣ୍ଡ ଦେଇ ଛାଡି କୃତ୍ରିମ ସ୍ରୋତ କରାଯାଏ । ଚନ୍ଦ୍ରଭାଇନା ସେ ଜଳଧାରର ଉପର ମୁଣ୍ଡରେ ବୁଦାମୂଳରେ ବସି ମାଛଙ୍କ ଖାଦ୍ୟ ଯଥା କୁଣ୍ଡା, ଖୁଦ ଇତ୍ୟାଦି ପାଣିରେ ପକାଇଚାଲେ । ସେ ଖାଦ୍ୟ ନିମ୍ନଗାମୀ ହେଲେ ତାରି ଆକର୍ଷଣରେ ମାଛ ଭେଳା ଖାଦ୍ୟ ସନ୍ଧାନରେ ଉପରକୁ ଉଠିଆସନ୍ତି ଓ ଗଣ୍ଡରେ ଜମାହୁଅନ୍ତି । ଚନ୍ଦ୍ରଭାଇନା ଯେତେବେଳେ ଠଉରେଇନିଏଯେ ମାଛ ସ୍ରୋତ ଧାରରେ ଉଠିଲେଣି, ସେ ଆମକୁ ଇସାରା ଦିଏ । ଆମ ଭିତରୁ ଜଣେ ତତ୍କ୍ଷଣାତ୍ ପଟା (ଏକପ୍ରକାର ମାଛଧରା ବାଉଁଶ ଜାଲି) ନେଇ ସ୍ରୋତର ତଳଭାଗ ଅବରୋଧ କରିଦିଏ ଓ ସିଏ ଉପରଭାଗକୁ ମାଟିରେ ବନ୍ଦ କରିଦିଏ । ଅଳ୍ପ ସମୟ ମଧ୍ୟରେ କୃତ୍ରିମ ଜଳଧାର ଶୁଖିଲା ପଡିଯାଏ । ମାଛସବୁ ଭୂମିରେ ପଡିରହନ୍ତି । ଆମେ ଗୋଟେଇ ଆଣୁ । ଭୋଜି ପାଇଁ ୨୦/୩୦ଟା ମାଛ ହେଇଗଲେ ଯଥେଷ୍ଟ । ସେ ମାଛର ଅନ୍ୟ ଏକ ସ୍ୱତନ୍ତତା ହେଲା, ପିତ୍ତକୁ ସାଙ୍ଗେ ସାଙ୍ଗେ ବାହାର କରିବା ନିହାତି ଜରୁରୀ ନହେଲେ ମାଛ ପିତା ଲାଗିବ । ସେସବୁ କରିବାରେ ବହୁତ ମଜା ଲାଗେ ଓ ସେତେବେଳକୁ ପ୍ରବଳ ଭୋକ ବି ହେଉଥାଏ । ଆଗରୁ ରୋଷେୟା ଭାତ ଡାଲମା କରି ରଖିଥାଏ, ମାଛ ପହଞ୍ଚିବା କ୍ଷଣି ରନ୍ଧା ହୁଏ । ସେ ମଜା ଏବେ ସୁଦ୍ଧା ବି ସ୍ମୃତିରେ ଛାପିହୋଇ ରହିଚି ।



# ଗ୍ରାମ ଅଧିବାସୀ ଓ ବଂଶାବଳୀ

| ନାମ | ମୂଳ ବାସିନ୍ଦା | ପରିବାର ସଦସ୍ୟ |
|---|---|---|
| **୧. ମିଶ୍ର (ପଟ୍ଟଯୋଶୀ – ମକଦମ) ବଂଶ** | | |
| ଲୋକନାଥ ମିଶ୍ର (ପଟ୍ଟଯୋଶୀ) | ନୟାଗଡ | *ବୀରଭଦ୍ର, ଆନନ୍ଦ, ରାମଚନ୍ଦ୍ର, ଜୟକୃଷ୍ଣ* |
| *ବୀରଭଦ୍ର* | | ଲିଙ୍ଗରାଜ |
| ଲିଙ୍ଗରାଜ | | କୈଳାସ, କିଶୋର, ପୂର୍ଣ୍ଣଚନ୍ଦ୍ର, ମହେଶ, ସୁବାସ |
| *ଆନନ୍ଦ* | | ହରେକୃଷ୍ଣ, ରଘୁନାଥ, ଜଗନ୍ନାଥ |
| ହରେକୃଷ୍ଣ | | ରମେଶ, ଗିରିଶ*, ସୁରେଶ, ଲୋକେଶ, ପ୍ରକାଶ |
| ରଘୁନାଥ | | *ଗିରିଶ (ପୋଷ୍ୟ) |
| ଜଗନ୍ନାଥ | | ରବି ନାରାୟଣ, ରାଜେନ୍ଦ୍ର, ବ୍ରଜେନ୍ଦ୍ର |
| *ରାମଚନ୍ଦ୍ର* | | ସୁବାସ (ପୋଷ୍ୟ) |
| *ଜୟକୃଷ୍ଣ* | | ଦିବାକର |
| **୨. ମିଶ୍ର (କାର୍ଯ୍ୟୀ) ବଂଶ** | | |
| ଚିନ୍ତାମଣି ମିଶ୍ର | କରଡା | *ହାଡୁବନ୍ଧୁ, ଲକ୍ଷ୍ମଣ, ଲୋକନାଥ* |
| *ହାଡୁବନ୍ଧୁ* | | କୃଷ୍ଣଚନ୍ଦ୍ର, ସୋମନାଥ, ଶରତ, ଭୁବନେଶ୍ୱର, ଅନନ୍ତ, ବାସୁଦେବ |

| | | | |
|---|---|---|---|
| | *ଲକ୍ଷ୍ମଣ* | | ଭାଗିରଥୀ, ପ୍ରଫୁଲ୍ଲ, ଦୁର୍ଗାମାଧବ |
| | *ଲୋକନାଥ* | | ରଘୁନାଥ |
| ୩. | ରଘୁନାଥ ମିଶ୍ର | କରଡା | ସତ୍ୟବାଦୀ, ରାମଚନ୍ଦ୍ର, ଗୋବିନ୍ଦ |
| ୪. | ଗଙ୍ଗାଧର ମିଶ୍ର | କରଡା | **ଜଗନ୍ନାଥ,ରାମକୃଷ୍ଣ, କୃପାସିନ୍ଧୁ** |
| | *ଜଗନ୍ନାଥ* | | ଶରତ (ପୋଷ୍ୟ) |
| | *ରାମକୃଷ୍ଣ* | | ଅକାଳ ମୃତ୍ୟୁ |
| | *କୃପାସିନ୍ଧୁ* | | ରାୟଗଡା (ସ୍ଥାନାନ୍ତର) |
| ୫. | ଗୋଦାବରୀ ମିଶ୍ର | କରଡା | ମହାଦେବ |
| | ମହାଦେବ | | ନାରାୟଣ (ଜଗନ୍ନାଥ ପ୍ରସାଦକୁ ସ୍ଥାନାନ୍ତର ହେଲେ) |

୬. ଆଚାର୍ଯ୍ୟ ବଂଶ

| | |
|---|---|
| ବୈଦ୍ୟନାଥ | ଲୋକନାଥ (ଅଲେଖ) |
| ଲୋକନାଥ | ସୋମନାଥ (ପୋଷ୍ୟ) |
| ବୃନ୍ଦାବନ | ବିଶ୍ୱନାଥ |

୭. ମହାପାତ୍ର ବଂଶ (ସରବରାକାର) - (ପୂର୍ବଜ, ସାକ୍ଷୀଗୋପାଳ,ବଳପୁର ବାସିନ୍ଦା)

| | | |
|---|---|---|
| ହରିବନ୍ଧୁ | ସାରଙ୍ଗଧରପୁର | ***ଖତି,ଧନେଶ୍ୱର, ଗୋଦାବରୀ*** |
| *ଖତି* | | ନାରାୟଣ, ଆର୍ତ୍ତବନ୍ଧୁ, ଜୟକୃଷ୍ଣ *, ବାସୁଦେବ* |
| ନାରାୟଣ | | ଅନାମ, ପୁରୁଷୋତ୍ତମ |
| ଆର୍ତ୍ତବନ୍ଧୁ | | ଚିନ୍ତାମଣି |
| *ବାସୁଦେବ (ପୋଷ୍ୟ) | | ଶରତ, ଗଗନ |
| *ଧନେଶ୍ୱର* | | *ଜୟକୃଷ୍ଣ (ପୋଷ୍ୟ) |
| *ଜୟକୃଷ୍ଣ | | ବୈକୁଣ୍ଠ, ଗଣେଶ, ଲୋକବନ୍ଧୁ |
| *ଗୋଦାବରୀ* | | ନରସିଂହ |
| ନରସିଂହ | | ପ୍ରମୋଦ, ନୀରୋଦ, ଆମୋଦ |

୮. ରଥ ବଂଶ

| | | |
|---|---|---|
| ଗୋପୀନାଥ ରଥ | ବରଢି ଶାସନ | ନିଃସନ୍ତାନ |
| *ଜଗନ୍ନାଥ ରଥ* | | ରାମଚନ୍ଦ୍ର |
| ରାମଚନ୍ଦ୍ର | | ଶରତ, ବୃନ୍ଦାବନ |
| *କାଶିନାଥ ରଥ* | | ବାବନ, ବିରୂପାକ୍ଷ |

୯. ମିଶ୍ର ବଂଶ

| | | |
|---|---|---|
| ଜଗନ୍ନାଥ ମିଶ | ବିନାୟକପୁର | *ବୈଦ୍ୟନାଥ, ନରସିଂହ* |
| *ବୈଦ୍ୟନାଥ* | | ପୁର୍ଣ୍ଣଚନ୍ଦ୍ର, ଶ୍ରୀହର୍ଷ, ପ୍ରସନ୍ନ, ପ୍ରମୋଦ, ପ୍ରଭାତ |
| *ନରସିଂହ* | | ଚିତ୍ତରଞ୍ଜନ,ମନୋରଞ୍ଜନ, ଜ୍ଞାନରଞ୍ଜନ, ଜ୍ୟୋତିରଞ୍ଜନ |

୧୦. ମହାପାତ୍ର ବଂଶ

| | | |
|---|---|---|
| ବାଲୁଙ୍କି ମହାପାତ୍ର | ବାଣପୁର (କୁମାରଙ୍ଗ) | *ବାଞ୍ଛାନିଧି, ରଘୁନାଥ, ଜନ୍ମେଶ୍ୱର, ପ୍ରଫୁଲ୍ଲ, ଚନ୍ଦ୍ରଶେଖର* |
| *ବାଞ୍ଛାନିଧି* | | ବୀରୂପାକ୍ଷ, ସୁଦର୍ଶନ, ସୁରେଶ, କୃଷ୍ଣଚନ୍ଦ୍ର |
| *ରଘୁନାଥ* | | ଶଶାଙ୍କ, ହୃଷିକେଶ |
| *ଜନ୍ମେଶ୍ୱର* | | ଶିବଶଙ୍କର, କୈଳାସ, ହରିଶଙ୍କର |

| | | |
|---|---|---|
| ୧୧. ବଳଭଦ୍ର ମହାପାତ୍ର | | ସଦାଶିବ ଷଡଙ୍ଗୀ(ପୋଷ୍ୟ) |
| ୧୨. ଲୋକନାଥ ମିଶ୍ର | | ପୂର୍ଣ୍ଣଚନ୍ଦ୍ର, ଲିଙ୍ଗରାଜ, ଦେବରାଜ |

୧୩. କର ବଂଶ

| | | |
|---|---|---|
| ରାମଚନ୍ଦ୍ର କର | ଗୋଲଗାଁ | ହରେକୃଷ୍ଣ, ବାଳକୃଷ୍ଣ, ପ୍ରଫୁଲ୍ଲ, ରବି, କୈଳାସ ବ୍ରଜେନ୍ଦ୍ର |

୧୪. ମିଶ୍ର ବଂଶ

| | | |
|---|---|---|
| ନୀଳକଣ୍ଠ ମିଶ | କୁମ୍ଭାରିଆ | ସୋମନାଥ (ପୋଷ୍ୟ) ଲକ୍ଷ୍ମଣ |

୧୫. ମିଶ୍ର ବଂଶ

| | | |
|---|---|---|
| ରାମକୃଷ୍ଣ ମିଶ୍ର | କରଡା | ଭୁବନେଶ୍ୱର, ଦାମୋଦର |

| | | |
|---|---|---|
| ୧୬. ଆନନ୍ଦ ମିଶ୍ର | ନୟାଗଡ | |
| ୧୭. ବୁଲି ମିଶ୍ର | ନୟାଗଡ | |
| ୧୮. ଶଶି ମିଶ୍ର | ନୟାଗଡ | |
| ୧୯. ଖଲି ମିଶ୍ର | ନୟାଗଡ | |

୨୦. ଭାଇଗ ବୋଉ

୨୧. ବାଉରୀ ବୋଉ

୨୨. ପୂଜକ (ମନ୍ଦିର ସେବାୟତ) ବଂଶ

| | | |
|---|---|---|
| ଜଗନ୍ନାଥ ମହାପାତ୍ର | ଶରଣକୁଳ | ସତ୍ୟବାଦୀ, ସୁବାସ* |
| ଚିନ୍ତାମଣି ମହାପାତ୍ର | ଶରଣକୁଳ | *ସୁବାସ (ପୋଷ୍ୟ) |

୨୩. ମାଳୀ (ମନ୍ଦିର ସେବାୟତ) ବଂଶ

| | | |
|---|---|---|
| ପୂର୍ଣ୍ଣଚନ୍ଦ୍ର ମହାପାତ୍ର | ଗୋଲଗାଁ | ଦାଶରଥି, ଗଣେଶ୍ୱର |
| ଧନେଶ୍ୱର ମହାପାତ୍ର | ଗୋଲଗାଁ | ନାରାୟଣ, ମଦନ, ସୁଦର୍ଶନ |

୨୪. ଭଣ୍ଡାରୀ (ସେବାୟତ) ବଂଶ

| | | |
|---|---|---|
| ସଦା ଡାକୁଆ | ନିସନ୍ତାନ | (ଫକୀର ଡାକୁଆ – ଘରଜ୍ୱାଇଁ) |
| ଫକୀର | | ଭିକାରୀ |

୨୫. ଗୋପାଳ ବଂଶ

| | |
|---|---|
| ଈଶ୍ୱର ବାରିକ | ଉଛେଇ, ପଞ୍ଚୁ |
| ଉଛେଇ | ବନମାଳୀ, କ୍ଷେତ୍ରବାସୀ, ଭୀମ |
| ପଞ୍ଚୁ | ମାଟିଆ, ନକୁଳ, ନିତେଇ |
| ଅଗାଧେଇ | ବାଞ୍ଛା, କପିଳା |

୨୬. ସ୍ୱାଇଁ ବଂଶ

| | | |
|---|---|---|
| ଭାଗବତ ସ୍ୱାଇଁ (ମହରିଗି) | ମୁଗୁପାଟଣା | ଅରିଆ, ଶ୍ରୀବତ୍ସ |

| | | | |
|---|---|---|---|
| ୨୭. ଗୋପାଳ ବଂଶ | | | |
| | କେଳା ବେହେରା | ଡମସାହି | ସୁଦେଇ, ଉଦ୍ୟନାଥ, ଛାଟିଆ ଲଡୁଆ, ଭଗବାନ |
| ୨୮. ମଧୁବୈଶ୍ୟ ବଂଶ | | | |
| | ଗଙ୍ଗା ସାହୁ | | ବୁଦ୍ଧିଆ |
| | ବୁଦ୍ଧିଆ | | ତ୍ରିନାଥ, ରଙ୍କ, କୁନ |
| | ରାହାସ ସାହୁ | | ଉଛେଇ, ନାଲୁ |
| | ଉଛେଇ | | ଲୋକନାଥ, ଭିକାରୀ |
| | ନାଲୁ | | ଭଗବାନ (ବାହାଡାଝୋଲା ସ୍ଥାନାନ୍ତର ହେଲେ ) |
| | ନାରାୟଣ ସାହୁ | | ଗୁଣ୍ଡିଚା, ଲକ୍ଷ୍ମଣ |
| | ଗୁଣ୍ଡିଚା | | ସନାତନ (ପୋଷ୍ୟ) |
| | ଲକ୍ଷ୍ମଣ | | ଅନନ୍ତ |
| | ଅରକ୍ଷିତ ସାହୁ | | ଗୋଇ |
| | ମଙ୍ଗୁଳିଆ ସାହୁ | | ବାସୁ, ବଳଭଦ୍ର, ସନାତନ |
| ୨୯. ମହାନ୍ତି ବଂଶ | | | |
| | ଅଭିମନ୍ୟୁ ମହାପାତ୍ର | ବଧିସାହି | ନକୁଳ, ସହଦେବ |
| ୩୦. ଗୋପାଳ ବଂଶ | | | |
| | ଭାଗବତ ଜେନା | | ସୁକୁରିଆ, ଝୁଲିଆ |
| | ସୁକୁରିଆ | | ମଦନ, କେଶବ |
| ୩୧. ବୁଦ୍ଧି ପ୍ରଧାନ | | ବଡ କୁଟୁଣି | ଭିକା (ପୋଷ୍ୟ) |
| ୩୨. ପ୍ରଧାନ ବଂଶ | | | |
| | ବାସୁ ପ୍ରଧାନ | ମୁଗୁପାଟଣା | ଲୋକା ପ୍ରଧାନ |
| ୩୩. ତୈଳିକ ବୈଶ୍ୟ | | | |
| | କାହ୍ନୁ ସାହୁ | ନରେନ୍ଦ୍ରପୁର | ନିଧି |
| | ନିଧି | | ନାରଣ, କୃଷ୍ଣ, ରାମ |

## ୩୪. ରଜକ ବଂଶ

| | |
|---|---|
| ବୀର ସେଠୀ | ଲଡୁଆ, ପାଣ୍ଡୁ, ମଙ୍ଗୁଳିଆ, ଟିକିରି |
| ସନେଇ ସେଠୀ | ଛାଟିଆ, ଜୟ, ଛୋଟା |
| ରାମ ସେଠୀ | ଯୋଗୀ, ପଙ୍କଜ, ଶଙ୍କର |
| ବାଲାଜୀ ସେଠୀ | ମେଘା, ଇନ୍ଦ୍ର, ରବି |
| ଦଣ୍ଡୁ ସେଠୀ | ପଦିଆ, ଗାଣ୍ଡୁ |

●●●

# ଉତ୍କର୍ଷ

କେଉଁ କାଳେ କିଏ ସ୍ଥାପନା କରିଲା
କଜଳାଇ ପଲ୍ଲୀ ଗ୍ରାମ ।
ସମୟ ସ୍ରୋତରେ ସ୍ମୃତି ଲିଭିଲାଣି
ଲିଭିଲାଣି କେତେ ନାମ ॥
ପ୍ରକୃତି ରାଣୀର ଶୋଭାର ଭଣ୍ଡାର
ସେ କି ଆକର୍ଷଣ କଲା ।
ଅପନ୍ତରା ବଣେ ଗାଆଁ ବସାଇଲେ
ଯେ ଶୁଣେ ନାକ ଟେକିଲା ॥
ବସତି ବୋଇଲେ ତିରିଶି ଭିତରେ
ମିଶ୍ର ମହାପାତ୍ର ରଥ ।
ଦେବ ନୀତି ପାଇଁ ମାଳୀ ଯେ ପୂଜାରୀ
ହୋଇଥିଲେ ନିୟୋଜିତ ॥
ଗୋଧନ ହିତରେ ଗୋପାଳ ବି ଘର
ଭଣ୍ଡାରି ଧୋବା ସେବକ ।
ସଭିଙ୍କୁ ଏକତ୍ର ବାନ୍ଧି ରଖିଥିଲା
ଅବା ପରିବାର ଏକ ॥
ବିଦ୍ୱାନ ପଣ୍ଡିତ ଜ୍ଞାନୀ ଗୁଣୀଜନ
ଦୟାବାନ ଗ୍ରାମବାସୀ ।
ଗୁଣକୁ ପ୍ରଶଂସି ଆଦର କରନ୍ତି
ଏ ଅଞ୍ଚଳ ଅଧିବାସୀ ॥

ଏ କଳି କାଳରେ ବ୍ରାହ୍ମଣ ମାନଙ୍କୁ
ଆଉକି ଅଛି ଆଦର ।
ପୂଜାକର୍ମ ସହ କୃଷିକାର୍ଯ୍ୟକରି
ଚଳାଇଲେ ପରିବାର ।।
କୃଷିକୁ ନିଜର ଜୀବିକା ମଣିଲେ
ଚାଷକୁ କଲେ ଆଦର ।
ଚାଷୀକୁ ବଳଦ ଚାଷକୁ ଲଙ୍ଗଳ
ଏସବୁତ ଦରକାର ।।
ଚାଷ କାମ ପାଇଁ କେତେ ସଜବାଜ
ଲୋଡା ବଢେଇ କମାର ।
କାରିଗର ବିନା ନହେବ ସମ୍ଭବ
ସଭିଏଁ କଲେ ବିଚାର ।।
କୁଶଳ କାମକୁ କୁଶଳୀ ମଣିଷ
ଦୃଷ୍ଟିରେ ଜଣେ ପଡିଲେ ।
ଲିଙ୍ଗା ମହାରଣା ରାଜି ହୋଇଗଲେ
ଗୋଲଗାଁଆଁରୁ ଆସିଲେ ।।
କର୍ମ କୁଶଳତା କାମର ଶଇଳୀ
ତାଙ୍କ ସମ କେହି ନାହିଁ ।
ଗଢିଲେ ଲଙ୍ଗଳ କାଠ ସଜ ଯେତେ
ସଭିଙ୍କର ମନଚାହିଁ ।।
କମାର ଅଭାବେ ସଭିଏଁ ଚିନ୍ତିତ
ପ୍ରଭୁଙ୍କ କରୁଣା ହେଲା ।
ବିଶିଆ କମାର ଉଭାହେଲେ ଆସି
ପରିପୂର୍ଣ୍ଣତା ଲଭିଲା ।।



# ବିଶିଷ୍ଟ ବ୍ୟକ୍ତି

## ଲିଙ୍ଗରାଜ ମିଶ୍ର (୧୩/୧୧/୧୯୧୦ – ୦୯/୧୦/୧୯୫୮)

ପଣ୍ଡିତ ଲିଙ୍ଗରାଜ ମିଶ୍ର (ବାବା), ଜଣେ ଯୋଗଜନ୍ମା । ଆମ ଗାଁରେ ସେ ଜନ୍ମ ନେଇଥିବାରୁ ଆମେ ସମସ୍ତେ ଗର୍ବିତ । କେବଳ ଆମ ଗ୍ରାମବାସୀ କାହିଁକି, ଏ ଅଞ୍ଚଳବାସୀ । ସେ ଯଦି ଜନ୍ମ ନେଇନଥାନ୍ତେ, ଆମେ ସେଇ ବଣ ପାହାଡଘେରା ଆଦିବାସୀ ଅଞ୍ଚଳରେ ଅନାମଧେୟ ନିପଟ ମଫସଲି ହୋଇ ରହିଯାଇଥାନ୍ତୁ । ସେ ମହାନ ବ୍ୟକ୍ତିତ୍ୱ ଜଣେ ଲୋକହିତାକାଂକ୍ଷୀ ସମାଜ ସେବକ ଥିଲେ । ତାଙ୍କରି ପ୍ରଚେଷ୍ଟାରେ ଏଇ କଜଳାଇପଲ୍ଲୀ ଗ୍ରାମରେ ପଂଚାୟତ କାର୍ଯ୍ୟାଳୟ, ହାଇସ୍କୁଲ, (ସାରସ୍ୱତ ଲୋକ ବିଦ୍ୟାପୀଠ) ଡାକଘର ଓ ଅନ୍ୟ ଯେତେସବୁ ସରକାରୀ ଓ ବେସରକାରୀ ଅନୁଷ୍ଠାନ ଖୋଲିବା ସମ୍ଭବ ହୋଇପାରିଲା । ତାଙ୍କରି ପ୍ରେରଣାରେ ଏ ଅଞ୍ଚଳରେ, ବିଶେଷକରି ଆମ ଗାଁରେ, ଶିକ୍ଷାର ପ୍ରସାର ଘଟିଥିବା ହେତୁ ଯେଉଁ ସବୁ ଜ୍ଞାନୀ ଗୁଣୀ ବ୍ୟକ୍ତି ଗଢାହେଲେ, ସେମାନେ ଆଜି ସାରା ରାଜ୍ୟ, ଦେଶ, ଏପରକି ବିଦେଶରେ ମଧ୍ୟ ସୁନାମ ଅର୍ଜନ କରିପାରିଛନ୍ତି ।

ତାଙ୍କର ଅନ୍ୟ ଏକ ଦାନ ହେଲା ଉଛେଇ ନାଗଝର ଆନିକଟ । ଏ ଅଞ୍ଚଳର ମୁଖ୍ୟ ଜୀବିକା ହେଲା ଚାଷ, କିନ୍ତୁ ଜଳ ବିନା ଜୀବନ ଚିନ୍ତା କରାଯାଇପାରେନା । ଚାଷଜମିକୁ ଜଳସେଚିତ କରି ଚାଷୀକୁ ଆହାର ଯୋଗାଇବା ଲକ୍ଷ୍ୟରେ ସରକାରୀ ସ୍ତରରେ ସେ ଯେଉଁ ସଂଗ୍ରାମ କରିଥିଲେ ଓ ଫଳବତୀ ମଧ୍ୟ ହେଲେ, ତାହା କାଳକାଳକୁ ଲୋକେ ମନେ ରଖିବେ । ଏଇ ଆନିକଟ ବାନ୍ଧିବା ଯୋଜନାକୁ ଫଳବତୀ କରିବା ପାଇଁ ସିଏ ସେ ସମୟର ଇଂଜିନିୟର ନୀଳକଣ୍ଠ

ମିଶ୍ର ଓ ଓଭରସିଅର ଲିଙ୍ଗରାଜ ମିଶ୍ରଙ୍କ ସହ ଯୋଗାଯୋଗ କରିବା ପରେ ସେମାନେ ଏ ଅପହଞ୍ଚ ଜାଗାକୁ ହାତୀ ଉପରେ ଚଢି ଆସିଲେ ଓ ସମସ୍ତ ବିଷୟ ଅନୁଧ୍ୟାନ କରି ମଞ୍ଜୁରୀ ପ୍ରଦାନ କରିଥିଲେ । ସେତେବେଳର ରାଜ୍ୟପାହ୍ୟା କଂଟ୍ରାକ୍ଟର ବନମାଳୀ ପଟ୍ଟନାୟକ ବନ୍ଧ କାମ ଆରମ୍ଭ କଲେ ଅବଶ୍ୟ, କିନ୍ତୁ ଗଡଜାତ ମିଶ୍ରଣ ହେତୁ କାମ ଅଧାରେ ବନ୍ଦ ରହିଲା । ଲିଙ୍ଗରାଜ ମିଶ୍ର ବିଭାଗୀୟ କର୍ତ୍ତୃପକ୍ଷଙ୍କ ସହ ଯୋଗାଯୋଗ କରିବା ସହ ମୁଖ୍ୟ ଯନ୍ତ୍ରୀ ଶ' ସାହେବଙ୍କୁ ଦେଖା କରି ପୁନଃ କାର୍ଯ୍ୟ ଚଳାଇବାପାଇଁ ଅନୁମତି ପ୍ରାପ୍ତ କରାଇଥିଲେ। ଏ ଆନିକଟ ଅଞ୍ଚଳର ଚାଷୀକୁଳ ପାଇଁ ତାଙ୍କରି ହିଁ ଦାନ, ତେଣୁ ଆମେ କହୁ ସେ ଆମ ଗାଁର ଗୋପବନ୍ଧୁ ।

ଲୋକନାଥ ମିଶ୍ର ଏ ଗାଁ ସ୍ଥାପନା କରିଥିଲେ। ତାଙ୍କ ଭାଇଙ୍କ ନାମ ଆର୍ତ୍ତବନ୍ଧୁ ମିଶ୍ର। ସେମାନେ ନୟାଗଡର ମୂଳ ବାସିନ୍ଦା। ଲୋକନାଥ ମିଶ୍ରଙ୍କର ଚାରି ପୁଅ। ବୀରଭଦ୍ର, ଆନନ୍ଦ, ରାମଚନ୍ଦ୍ର, ଓ ଜୟକୃଷ୍ଣ। ବୀରଭଦ୍ରଙ୍କ ପୁଅଙ୍କ ନାମ ଲିଙ୍ଗରାଜ। ବୀରଭଦ୍ର ତାଙ୍କ କକେଇ ଆର୍ତ୍ତବନ୍ଧୁଙ୍କୁ ଦତ୍ତ ହେବାରୁ ପୋଷ୍ୟପୁତ୍ର ରୂପେ ମୂଳ ବାସସ୍ଥାନ ନୟାଗଡକୁ ଫେରିଗଲେ । କିନ୍ତୁ କିଛିବର୍ଷ ପରେ ସେ ପୁନଶ୍ଚ ଜନ୍ମସ୍ଥାନକୁ ପ୍ରତ୍ୟାବର୍ତ୍ତନ କରି ଏଠାର ସ୍ଥାୟୀ ଅଧିବାସୀ ହୋଇ ରହିଲେ ।

ଲିଙ୍ଗରାଜ ମିଶ୍ରଙ୍କ ପ୍ରଥମ ପତ୍ନୀଙ୍କର ଅକାଳ ମୃତ୍ୟୁ ଘଟିଥିବା ପରେ ସେ ମାନଧାତାପୁର ଗାଁର ଅପ୍ସରାଙ୍କୁ ବିବାହ କଲେ । ପ୍ରଥମ ପତ୍ନୀଙ୍କ ଔରସରୁ ଜନ୍ମିତ କନ୍ୟାର (ଶଶୀ) ଲାଳନ ପାଳନ ଦାୟିତ୍ୱ ତାଙ୍କ ମାମୁଁ ଆମ ଗାଁ କବିରାଜ ଜଗନ୍ନାଥ ରଥ ନେଲେ । ଦ୍ୱିତୀୟ ପତ୍ନୀଙ୍କ ଔରସରୁ ପାଞ୍ଚ ପୁତ୍ର ଓ ଏକ କନ୍ୟା ଜନ୍ମ ନେଲେ । ବିଧିର ବିଧାନ, ତାକୁ କେହି ଟାଳି ପାରିବେ ନାହିଁ । ସେପରି ଜଣେ ମହାନ ଜନନାୟକଙ୍କର ଯେ ଅକାଳ ମୃତ୍ୟୁ ହେବ, କେହି ଭାବି ନଥିଲେ । ବିପଦ ପରେ ବିପଦ। ସେ ରାଜଯକ୍ଷ୍ମା ରୋଗରେ ପୀଡ଼ିତ ହୋଇ ଚପଳମତି ସନ୍ତାନ ସନ୍ତତିଙ୍କୁ ବାଲ୍ୟାବସ୍ଥାରେ ଛାଡି ୪୮ ବର୍ଷ ବୟସରେ ଆର ପାରିକୁ ଚାଲିଯିବାପରେ, ଜ୍ୟେଷ୍ଠପୁତ୍ର କୈଳାସର (ବାୟା) ୨୪ ବର୍ଷ ବୟସରେ ଅକାଳ ବିୟୋଗ ଘଟିବା ପରିବାରର ସମସ୍ତ ସଦସ୍ୟଙ୍କ ପ୍ରତି ଏକ ଶକ୍ତ ଧକ୍କା ଥିଲା।

ମିଶ୍ର ମହାଶୟଙ୍କର ଯାହାକିଛି ପୈତୃକ ସମ୍ପତ୍ତି ସ୍ୱରୁପ ଜମିବାଡି ଅନ୍ୟ ଗାଁମାନଙ୍କରେ ଥିଲା, ନିଜେ ଜନହିତକର କାର୍ଯ୍ୟରେ ଲିପ୍ତରହି ସେଥିପ୍ରତି ବିଶେଷ

ଧ୍ୟାନ ଦେଇପାରିନଥିଲେ । ଫଳତଃ ତାଙ୍କ ଅନ୍ତେ ଭାଗଚାଷୀମାନେ ସେ ଜମିକୁ ନିଜ ମାଲିକାନାକୁ ନେଇଗଲେ, ତେଣୁ ସେ ପରିବାରର ଆର୍ଥିକ ଓ ମାନସିକ ପରିସ୍ଥିତି ଶୋଚନୀୟ ହୋଇ ପୀଡା ବଢ଼ିଲା ।

ଲିଙ୍ଗରାଜ ମିଶ୍ର ଅସାଧାରଣ ପାଣ୍ଡିତ୍ୟର ଅଧିକାରୀ ଥିଲେ । ସେ ଷଷ୍ଠ ଶ୍ରେଣୀରୁ ଉତ୍ତୀର୍ଣ୍ଣ ହୋଇ ପାରିବାରିକ ଅସୁବିଧା ବଶତଃ ସପ୍ତମ ଶ୍ରେଣୀ ଅଧାରୁ ପଢ଼ା ଛାଡିଦେଲେ।  ଓଡିଆ ସହ ଇଂରାଜି, ସଂସ୍କୃତ,  ହିନ୍ଦି ଓ ବଙ୍ଗଳା ଭାଷା ମଧ୍ୟ ତାଙ୍କୁ ଜଣା ଥିଲା । ସେ ଖୁବ୍ ଭଲ ଇଂରାଜୀ କୁହନ୍ତି । ତାଙ୍କ ଜୀବନ ଅବିସ୍ମରଣୀୟ। ଜନ ସେବାରେ ନିଜ ଜୀବନକୁ ସେ ଉତ୍ସର୍ଗ କରିଦେଇଥିଲେ । ଅକାଳ ମୃତ୍ୟୁ ଯୋଗୁଁ ତାଙ୍କର ଅନେକ ସ୍ୱପ୍ନ ସାକାର ହୋଇପାରିଲା ନାହିଁ । ବାଣପୁରକୁ ରାସ୍ତା, ଡାକ୍ତରଖାନା ଇତ୍ୟାଦି କେତେକ କାର୍ଯ୍ୟ ଅପୂର୍ଣ୍ଣ ରହିଗଲା । ତାଙ୍କର ପାଣ୍ଡିତ୍ୟର ପ୍ରଶଂସା କରି ନୟାଗଡ ରାଜା ତାଙ୍କୁ ପଣ୍ଡିତ ପଦବୀରେ ଭୂଷିତ କରିଥିଲେ । ତାଙ୍କର ବୈପ୍ଲବିକ ଚିନ୍ତାଧାରା ଓ ସାହାସ ଅନେକ ରାଜନୀତିଜ୍ଞ ବ୍ୟକ୍ତିଙ୍କୁ ପ୍ରଭାବିତ କରିଥିଲା । ସେ ରଣପୁର ପ୍ରଜାମଣ୍ଡଳର ସଭ୍ୟଭୁକ୍ତ ହୋଇ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ । ସ୍ୱାଧୀନତା ପରେ, ରାଜ୍ୟର ତତ୍କାଳୀନ ରାଜନୈତିକ ପ୍ରତିନିଧି ହରେକୃଷ୍ଣ ମହତାବ ତାଙ୍କୁ ରାଜନୀତିରେ ଯୋଗ ଦେବାକୁ  ଉତ୍ସାହିତ କରିବା ଅବସରରେ ସେ ପ୍ରତ୍ୟାଖ୍ୟାନ କରି କେବଳ ନିଜ ଅଞ୍ଚଳର ଉନ୍ନତି କରିବାର ଅଭିପ୍ରାୟ ଜଣାଇଥିଲେ ।

ସେଇ ମହାନ ବ୍ୟକ୍ତିତ୍ୱଙ୍କ ଜୀବନୀ ଅନୁଶୀଳନ କଲେ ମନରେ ସ୍ୱତଃ ପ୍ରଶ୍ନ ଆସେ, ଯେଉଁ ବ୍ୟକ୍ତି ନିଜର ସବୁ ଶକ୍ତି ଓ ସାମର୍ଥ୍ୟ ଲୋକଙ୍କ ସେବାରେ ନିୟୋଜିତ କରିଗଲେ, ତାଙ୍କ ନିଜ ଓ ସାଂସାରିକ ଜୀବନ ଏତେ ଦୁର୍ବିସହ କାହିଁକି ହେଲା ? ତାଙ୍କର ପ୍ରଚେଷ୍ଟା ମଧ୍ୟରେ ଗ୍ରାମର ଉନ୍ନତି ସକାଶେ ଯେଉଁ ସମ୍ୟକ ସୂଚୀ ଉପରେ ସୂଚିତ କରାଯାଇଅଛି, ତା'ପୂର୍ବରୁ ସେ ନୟାଗଡ ମଣ୍ଡଳ ସମୂହର ଉନ୍ନତି ପାଇଁ କ୍ଲବ ଓ ପାଠାଗାର ପ୍ରତିଷ୍ଠା କରିବା ସହ ଅଞ୍ଚଳର ଶିକ୍ଷା ବ୍ୟବସ୍ଥାରେ ଉନ୍ନତି ଆଣିବା ଉଦ୍ଦେ୍ୟଶରେ ଶରଣକୂଳରେ ଉଚ୍ଚ ଇଂରାଜୀ ବିଦ୍ୟାଳୟ ଖୋଲିବା ପାଇଁ ପ୍ରତିଶ୍ରୁତିବଦ୍ଧ ହୋଇ ୧୯୪୭ ମସିହାରେ ମଧ୍ୟଇଂରାଜୀ ବିଦ୍ୟାଳୟ ଶ୍ରେଣୀ ଗୃହରେ ଅଷ୍ଟମ ଶ୍ରେଣୀ ଖୋଲି ଶ୍ରୀ ଉପେନ୍ଦ୍ର ନାଥ ଶତପଥୀଙ୍କୁ ପ୍ରଧାନ ଶିକ୍ଷକ ରୂପେ ନିଯୁକ୍ତି ଦେଲେ । ବିଦ୍ୟାଳୟର ନାମ ନୟାଗଡ ରାଜାଙ୍କ ନାମ ଅନୁସାରେ "ନାରାୟଣ

ଉଚ୍ଚ ଇଂରାଜୀ ବିଦ୍ୟାଳୟ" ରଖାଗଲା । ସ୍ୱାସ୍ଥ୍ୟର ଉନ୍ନତି ପାଇଁ ଶରଣକୁଳରେ ଏକ ସରକାରୀ ଡାକ୍ତରଖାନା ଖୋଲିବା ପାଇଁ ଯୋଗାଯୋଗ କରି ସଫଳ ହେବା ତାଙ୍କର ଅନ୍ୟ ଏକ ପଦକ୍ଷେପ । ସେ ଶରଣକୁଳ ପ୍ରତି ବିମୁଖ ହୋଇ ଗ୍ରାମାଭିମୁଖ ହେବାର ଏକ ରହସ୍ୟ ଥିଲା । ବିଦ୍ୟାଳୟ ଓ ଡାକ୍ତରଖାନା ସ୍ଥାପନା ହେବାରେ ସଫଳ ହେବାପରେ, ବିଦ୍ୟାଳୟ ପାଇଁ ଏକ ଛାତ୍ରାବାସ (ନେତାଜୀ ଛାତ୍ରାବାସ) ନିର୍ମାଣ କରିବା ଅଭିପ୍ରାୟରେ ଅଞ୍ଚଳର କେତେକ ଗଣ୍ୟମାନ୍ୟ ବ୍ୟକ୍ତିଙ୍କୁ ନେଇ ଏକ ସଭାର ଆୟୋଜନ କଲେ । କିନ୍ତୁ ସେ ସଭାରେ କେତେକ ନ୍ୟସ୍ତସ୍ୱାର୍ଥୀ ସଭ୍ୟ ତାଙ୍କ କାର୍ଯ୍ୟକୁ ସମାଲୋଚନା କରିବା ସହ ନିଜ ସ୍ୱାର୍ଥନିହିତ କହି ଅଙ୍ଗୁଳି ଉଠାଇବାରେ ସେ ବିତସ୍ପୃହ ହୋଇ ଶରଣକୁଳ ଛାଡି ନିଜ ଗ୍ରାମକୁ ଫେରି ପ୍ରତିଜ୍ଞାବଦ୍ଧ ହେଲେ ଯେ ଗାଁକୁ ଉନ୍ନତିର ଶିଖର ଦେଶରେ ପହଞ୍ଚାଇ ଏକ ଆଦର୍ଶ ଗ୍ରାମରେ ପରିଣତ କରିବେ । ଅବଶ୍ୟ ଶିକ୍ଷାର ବିକାଶ ପାଇଁ ତା'ର ବହୁ ପୂର୍ବରୁ, ସେ ଗାଁରେ ଏକ ପାଠାଗାର ପ୍ରତିଷ୍ଠା କରିସାରିଥିଲେ ।

୧୯୩୦ ମସିହା ବେଳକୁ ଏ ଅଞ୍ଚଳର ଅବସ୍ଥା କ'ଣ ଥିଲା ନଦେଖିଲେ ବିଶ୍ୱାସ କରିହେବନାହିଁ ? ସେ ସମୟରେ, ଏପରି ଏକ ଅନଗ୍ରସର ଅଞ୍ଚଳରେ ପୁଣି କଜଳାଇପଲ୍ଲୀ ପରି ଅନାମଧେୟ ଗାଁରେ, ଏକ ପାଠାଗାର ପ୍ରତିଷ୍ଠା କରିବାର ଇଚ୍ଛା କେବଳ ଜଣେ ଦୂରଦୃଷ୍ଟିସମ୍ପନ୍ନ ବ୍ୟକ୍ତିହିଁ ଚିନ୍ତା କରିପାରିବେ । ଏକ ସୁନ୍ଦର କୋଠାଘର ନିର୍ମାଣ କରାଇ ତା' ମଧ୍ୟରେ ବିଭିନ୍ନ ଭାଷାର ନାମୀ ଦାମୀ ପାଖାପାଖି ଦୁଇ ହଜାର ପୁସ୍ତକ ସଂଗୃହୀତ କରାଇ ସମସ୍ତଙ୍କୁ ପଢିବାକୁ ପ୍ରେରଣା ଦେଲେ । ସେତିକି ନୁହେଁ, ପାଠାଗାରର ସୁବିଧା ଦୂର ଦୂରାନ୍ତରୁ ଇଚ୍ଛୁକ ପାଠକଙ୍କୁ କିପରି ଲବ୍ଧ ହେବ, ସେକଥାକୁ ମଧ୍ୟ ମନରେ ରଖି ଶରଣକୁଳରେ ଏହାର ଏକ ଶାଖା ଖୋଲିବା ପାଇଁ ସ୍ଥାନ ନିରୂପଣ କରିଥିଲେ । ତାଙ୍କ ପାଇଁ କବିତାଟିଏ -

## କାଳଜୟୀ

ଅଦମ୍ୟ ସାହାସ ପ୍ରଗାଢ ବିଶ୍ୱାସ
ଭିନ୍ନ ବିଚାର ତାଙ୍କର ।
ଅସମ୍ଭବକୁ ସେ ସମ୍ଭବ କରନ୍ତି
ବାଧାବିଘ୍ନେ ନାହିଁ ଡର ।।

ଅଟଳ ପ୍ରତିଜ୍ଞା ମେରୁ ପରି ସ୍ଥିର
ଧୀର ଶାନ୍ତ ଚିତ୍ତ ବୁଦ୍ଧି ।
ଅଦ୍ଭୁତ ସଙ୍କଳ୍ପ ବିଶ୍ୱାସ ଲାଗେନା
ଲଭିବେ କି ସେ ପ୍ରସିଦ୍ଧି ।।

ଅତୁଟ ବିଶ୍ୱାସ ମନରେ ତାଙ୍କର
ଏକା ଈଶ୍ୱର ଭରସା ।
ଅବିରାମ ଚେଷ୍ଟା ଚଳାଇ ଲଢନ୍ତି
ଏକ ଲକ୍ଷ ଏକ ଦିଶା ।।

ଅଜେୟ ପୁରୁଷ କାଳଜୟୀ ସିଏ
ଚଢିଲେ କୃତି ସୋପାନ ।
ଅଞ୍ଚଳବାସୀଙ୍କ ସ୍ମୃତି ପଟଳରେ
ଛାପ ସୃଷ୍ଟି କଲେ ଜାଣ ।।

ଅପନ୍ତରା ପଲ୍ଲୀ ଗ୍ରାମବାସୀଙ୍କର
ଦୁର୍ଦ୍ଦଶା ଲାଘବ କଲେ ।
ଅପାଠୁଆପାଠ ପଢିବା ସୁଯୋଗ
ପାଇ ଶିକ୍ଷିତ ହୋଇଲେ ।।

ଅପହଞ୍ଚ ହେତୁ ଏ ଦୁର୍ଗମ ପଲ୍ଲୀ
ବାର୍ତ୍ତା ବିନିମୟ ଚିନ୍ତା ।
ଅପରାଜିତ ସେ ସମ୍ଭବ ହୋଇଲା
ଡାକସେବାର ପ୍ରଣିତା ।।

ଅନାବୃଷ୍ଟି ପାଇଁ ଚାଷୀଏ ହତାସ
ବେଉସା ହୁଅଇ ବଣା ।
ଅନୁରାଗ ଭରା ହୃଦୟର ପୀଡା
ପ୍ରକାଶ କରିଲେ ସିନା ।।

ଅବିରାମ ଚେଷ୍ଟା ଫଳବତୀ ହେଲା
ଆନିକଟ ବନ୍ଧାହେଲା ।
ଅଜାଚିତ ଭାବେ ସମ୍ବର୍ଦ୍ଧନା ପାଇ
ତାଙ୍କ ଖ୍ୟାତି ବଢ଼ିଗଲା ।।

ଅଞ୍ଚଳର ଦୁଃଖ ଦୂର କରିବାକୁ
ଖୋଲିଦେଲେ ପଞ୍ଚାୟତ ।
ଅଜଣା ଦୁର୍ଗମ ଏ ପଲ୍ଲୀ ଅଞ୍ଚଳ
ନାମ ହୋଇଲା ପ୍ରଖ୍ୟାତ ।।

ଅଦୃଶ୍ୟ ଶକ୍ତିର ଇଚ୍ଛା କିଏ ଜାଣେ
ତାଙ୍କପରି ମଣିଷକୁ ।
ଅକାଳରେ ନେଇ ଶୋକ ସାଗରରେ
ଭସାଇ ଦେଲେ ଆମକୁ ।।

## ৺ଆନନ୍ଦ ମିଶ୍ର

ଆନନ୍ଦ ମିଶ୍ର ଏ ଗାଁର ପ୍ରତିଷ୍ଠାତା ৺ଲୋକନାଥ ପଟ୍ଟଯୋଶୀଙ୍କ ଦ୍ୱିତୀୟ ପୁତ୍ର । ବଡ଼ଭାଇ ନୟାଗଡ଼ ପୋଷ୍ୟ ହୋଇଯିବା ପରେ, ପିତାଙ୍କ ଅନ୍ତେ, ସେ ଗାଁର ମକଦମ ପଦ ଭାର ଗ୍ରହଣ କରିବା ସ୍ୱାଭାବିକ । ସେ ମକଦମ ପଦରେ ବିଭୂଷିତ ହୋଇ ଗ୍ରାମର ଭଲ-ମନ୍ଦ, ନ୍ୟାୟ-ନିଶାପ ବୁଝିଲେ ଓ ଲୋକଙ୍କର ଆସ୍ଥା ଭାଜନ ହୋଇଥିବାରୁ ଗାଁରେ ଗଣ୍ଡଗୋଳ, ମନାନ୍ତର ସହଜରେ ସମାଧାନ ହୋଇଯାଉଥିଲା । କୋର୍ଟ କଚେରୀକୁ ମାମଲା କେବେ ବି ଯାଉ ନ ଥିଲା । ତାଙ୍କୁ ଗାଁର ସଭିଏଁ ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରୁଥିଲେ ।

ମୁଁ ଦେଖିଲା ବେଳକୁ ସେ ତାଙ୍କ ମଣ୍ଡପରେ ହିଁ କୁଜାହୋଇ ବସିରହୁଥାନ୍ତି । ବୟସ ଯାହା ହେଉନା କାହିଁକି, ବସନ୍ତ ରୋଗରେ ଆକ୍ରାନ୍ତ ହେବାରୁ, ସେ ବ୍ୟାଧିଗ୍ରସ୍ତ ହୋଇ ଚଲାବୁଲା କରିପାରୁନଥିଲେ । କିନ୍ତୁ ତାଙ୍କ ମଣ୍ଡପରେ ପଶାପାଲି ପଡିଲେ, ବେଳେବେଳେ ଖେଳରେ ଭାଗ ନେଉଥିଲେ । ଆର୍ଥିକ ଦୃଷ୍ଟିରୁ ତାଙ୍କର ଅବସ୍ଥା ସ୍ୱଚ୍ଛଳ ନଥିଲା । ଜମି, ପଦା, ବଗାୟତ ଯଥେଷ୍ଟ ଥାଇବି ଏତେବଡ

କୁଟୁମ୍ବ ଚଳାଇବା ତାଙ୍କ ପାଇଁ କଠିନ ହେଉଥିଲା । ପଦା ଜମିରେ ସେମିତି କିଛି ଅର୍ଥକରି ଫସଲ ହେଉନଥିଲା । ଅନ୍ୟବାଟରୁ କିଛି ରୋଜଗାର ବି ନଥିଲା । ଆନନ୍ଦ ମିଶ୍ରଙ୍କର ତିନିପୁଅ । ବଡ ପୁଅ ହରେକୃଷ୍ଣ, ମଝିଆ ରଘୁନାଥ ଓ ସାନ ଜଗନ୍ନାଥ । ବଡ ଗାଁରେ ଥାଇ ଘରକଥା ବୁଝନ୍ତି । ମଝିଆ ପୁଅ ଯୁବା ବୟସରେ ଅକାଳମୃତ୍ୟୁ ଲଭିଲେ । କିନ୍ତୁ ତାଙ୍କର ବାଲ୍ୟବିବାହ ହୋଇଯାଇଥିବା ହେତୁ, ତାଙ୍କ ବିଧବା ପତ୍ନୀ ପତିଙ୍କ ଦେହାନ୍ତ ପରେ ବି ଶାଶୁଘରେ ଆସି ରହିଲେ । କାରଣ ବ୍ରାହ୍ମଣ ଘର, ପୁଣି ନୈଷ୍ଠିକ ବୈଦୀକ ବ୍ରାହ୍ମଣ । ପୀଢି ଅନୁଯାୟୀ ପ୍ରଚଳିତ ସମାଜର ପ୍ରଥାକୁ ସମ୍ମାନ ଦେଇ ସ୍ୱାମୀଙ୍କ ସାନିଧ୍ୟ ପ୍ରାପ୍ତ ନ ହୋଇବି ସେ ଶାଶୁଘରେ ରହିଲେ । କୁଳ ରକ୍ଷା ପାଇଁ ଅବଶ୍ୟ ଦେଢଶୁରଙ୍କ ଦ୍ୱିତୀୟ ପୁତ୍ର ଗିରୀଶକୁ ପୋଷ୍ୟ ଗ୍ରହଣ କଲେ । ସାନପୁଅ ଜଗନ୍ନାଥ,ଶିକ୍ଷ ବିଭାଗରେ ଚାକିରୀ କରି ନିଜ ପରିବାର ସହ ସୁଦୂର କୁଚିଣ୍ଡାରେ ରହୁଥିଲେ । ଚାକିରୀରୁ ଅବ୍ୟାହତି ନେବା ପରେ ହିଁ ସେ ଗାଁକୁ ଫେରିଲେ । ସାନପୁଅ ଭାରି ମଜାଳିଆ ବ୍ୟକ୍ତି ଓ ପ୍ରତ୍ୟୁତ୍ପନ୍ନ ଗୁଣ ସହ ଉପସ୍ଥିତ ବୁଦ୍ଧି ଅତି ପ୍ରଖର । ତାଙ୍କ ସହ କଥା ହେଲେ ବାରି ମଜା ଲାଗେ ।

## ହରେକୃଷ୍ଣ ମିଶ୍ର

ପିତା ଆନନ୍ଦ ମିଶ୍ରଙ୍କ ଦେହାନ୍ତ ପରେ ହରେକୃଷ୍ଣ ମିଶ୍ର ଗାଁର ମକଦମ ଦାୟିତ୍ୱ ତୁଲାଇଲେ । ସେ ଜଣେ ଅମାୟିକ ବ୍ୟକ୍ତି । ନିଜର ଆର୍ଥିକ ସ୍ଥିତି ସ୍ୱଛଳ ନ ଥାଇ ଓ ଏତେ ବଡ଼ ପରିବାର ତୁଲାଇବାରେ ବହୁ ବାଧାବିଘ୍ନ ସମ୍ମୁଖୀନ ହେବାସତ୍ତ୍ୱେ ବି କେବେ ବି ମନରେ ଦୁଃଖ ନଥାଏ। ସଦାବେଳେ ହସହସ ମୁହଁ, ପରହିତ ଚିନ୍ତା, ଏବଂ ଗାଁର ଉନ୍ନତି ପାଇଁ ତତ୍ପର । ମଣ୍ଡପରେ ପଶାଖେଳର ଆସର, ଦୁଆରେ ଗୋଟିଏ ଛୋଟ ଦୋକାନ ଓ ତା'ସହ ଛୋଟ ପିଲାମାନଙ୍କୁ ମାଗଣା ଶିକ୍ଷାଦାନ ଭଳି ଭଲ ଗୁଣ ଗାଇଲେ ସରିବ ନାହିଁ । ଗାଁର ନ୍ୟାୟ ନିଶାପରେ ସେ ଦୋଷୀକୁ ଦଣ୍ଡ ଦେବା ପରିବର୍ତ୍ତେ ତା'ର ଚରିତ୍ରରେ ସୁଧାର ଆଣିବାକୁ ସେ ପ୍ରାଥମିକତା ଦେଇଥାନ୍ତି। ତାଙ୍କ ପାଇଁ ମନରୁ ଆସୁଥିବା ଭାବ ସମୂହର କବିତାଟିଏ –

## ଆଦର୍ଶ ମଣିଷ

କୋଡିଏ ତିରିଶ ବସତିକୁ ନେଇ
ଆମ ଏ ଛୋଟ ଶାସନ।
ମିଶ୍ର ମହାପାତ୍ର କର ରଥ ସହ
ଆଚାର୍ଯ୍ୟ ଆଦି ବ୍ରାହ୍ମଣ॥

ଶାସନୀ ବ୍ରାହ୍ମଣ କର୍ମ ଦେବ ପୂଜା
ନୀତି କାନ୍ତି ନ୍ୟାୟ ଧର୍ମ।
ଦୟା କ୍ଷମା ଗୁଣ ପ୍ରଚାର ପ୍ରସାର
ବୁଝନ୍ତି ତାହାର ମର୍ମ॥

ସେବାୟତ ବିନା ହେବନି ସମ୍ଭବ
ସଭିଏଁ ଭାଳିଲେ ବସି।
ମନ୍ଦିର ସେବାରେ ମାଳି ପୁଜାରୀଙ୍କ
ପୂଜାର୍ଚ୍ଚନା କାମ ବେଶି॥

ଗୋରୁ ଜଗିବାକୁ ଗଉଡର ସେବା
ତାସାଥେ ଭଣ୍ଡାରୀ ଧୋବା।
ସେଇ କେତେଘର ପାଖରେ ରହିଲେ
ସର୍ବେ ଏକମନ ହେବା॥

ନାହିଁ ଭେଦଭାବ ମନ ଫଟାଫଟି
ନାହିଁ ଗର୍ବ ନାହିଁ ଈର୍ଷା।
କି ଧନୀ ଗରିବ ସଭିଏ ସମାନ
ଏକା ସେ ପ୍ରଭୁ ଭରସା॥

ଲୋକା ପଢଯୋଶୀ ଡାକନ୍ତି ପାଡୁଶି
ବସାଇଥିଲେ ଏ ଗାଆଁ।

ସେ ଯାଇ ଆନନ୍ଦ ମିଶ୍ର ବି ଗଲେଣି
ରହିଚି କେବଳ ନାଆଁ ।।

ତାଙ୍କ ବଡପୁଅ ହରେକୃଷ୍ଣ ମିଶ୍ର
ଗାଆଁ ମକଦମ ଥିଲେ ।
ଗାଆଁର ମଙ୍ଗଳ ଚିନ୍ତା ଥାଏ ମନେ
ନିଜ ପର ନ ଭାବିଲେ ।।

ଆର୍ଥିକ ସ୍ୱଚ୍ଛଳ ନଥାଇ ବି ମନେ
ବଦାନ୍ୟତା ଦାନୀପଣ ।
ଫେରିବେନି କେହି ରିକ୍ତ ହସ୍ତେ ସେଠୁ
ଅନ୍ନ ମୁଠେ ହେଉ ଜାଣ ।।

ବ୍ରାହ୍ମଣ ଘରର ପୁଅ ମାନଙ୍କର
ଦୁର୍ଦ୍ଦଶା କି କହିହୁଏ ।
ପୂଜା ପାଠ ଛଡା ଅନ୍ୟବୃତ୍ତି କିଛି
କରି ନପାରନ୍ତି ସିଏ ।।

ଯେଉଁ କେତେଜଣ ଚାକିରି କରନ୍ତି
ସେମାନଙ୍କ କଥା ଭିନ୍ନ ।
ଅନ୍ୟଥା ବେକାର ବ୍ରାହ୍ମଣ ପିଲାଏ
ବସି ଖାଉଥାନ୍ତି ଅନ୍ନ ।।

ହରିମିଶ୍ର ଜଣେ ଉଦ୍ୟୋଗୀ ମଣିଷ
ଆଦର୍ଶ ହୋଇ ରହିଲେ ।
ବଡ଼ ପରିବାର ଚଳାଇବା ପାଇଁ
ନାନା ସଂଘର୍ଷ ସେ କଲେ ।।

ଛୋଟ ଦୋକାନଟେ ଖୋଲିଲେ ଦୁଆରେ
ଲୁଣ ଠାରୁ ତେଲ ଯାଏ।
ନଗଦ ବାକିରେ କିଣା ବିକା ହୁଏ
ମନରେ କ୍ଷୋଭ ନଥାଏ ॥

ସଭିଙ୍କୁ ଆଗ୍ରହେ ଯାଚନ୍ତି ସଉଦା
ପଇସା ଦେବ ପଛରେ।
ଆମ୍ଭ ଦିନେ ଝୁଡି କିଣି ରଖନ୍ତି ସେ
କୁଣ୍ଠା ନାହିଁ ବାଣ୍ଟିବାରେ॥

ପିଲାଙ୍କୁ ବସାଇ ବିନା ଦକ୍ଷିଣାରେ
ପାଠ ବି ପଢାଉଥିଲେ।
ଅଭାବ ଥାଇବି ବଦାନ୍ୟତା ତାଙ୍କ
ସରିବନି କହୁଥିଲେ॥

ନାନା ବୃତ୍ତି କରି ପରିଶେଷରେ ସେ
ନୟାଗଡ ଯାଇଥିଲେ।
ପେଷ୍କାର କାମକୁ ଆପଣେଇ ନେଲେ
ଆୟର ପନ୍ଥା ବାଛିଲେ॥

ଜୀବନଟା ତାଙ୍କ ସଂଘର୍ଷରେ ଭରା
ହେଲେ ସଦା ମନ ଖୁସି।
ସ୍ନେହ ଭରା ଡାକ ହସ ହସ ମୁହଁ
ଆଖି ଆଗେ ଯାଏ ଭାସି॥

## ରାମଚନ୍ଦ୍ର ମିଶ୍ର

ରାମଚନ୍ଦ୍ର ମିଶ୍ର କହିବା ଅପେକ୍ଷା ରାମମାଷ୍ଟ୍ରେ କହିଲେ ଆମ ଦୁଇ ଗାଁରେ ସମସ୍ତେ ଜାଣିବେ । ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ ହିସାବରେ ତାଙ୍କର ବେଶ୍ ନାଁ ଥିଲା । ଗାଁର ଜଣେ ନିଷ୍ଠାପର ଓ ପ୍ରତିଷ୍ଠାବାନ୍ ବ୍ୟକ୍ତି। ତାଙ୍କ ବ୍ୟବହାର ଓ

କାର୍ଯ୍ୟଶୈଳୀରୁ ଜଣାଯାଏ ଯେ, ସେ ଜଣେ ସମୟାନୁବର୍ତ୍ତୀ ଶିକ୍ଷକ । କୌଣସି ଅନୀତି ସହ୍ୟ କରିପାରନ୍ତି ନାହିଁ । ନିଜ କାର୍ଯ୍ୟରେ ହେଳା ପ୍ରଦର୍ଶନ କରିବା ତ ଦୂରର କଥା, ଅନ୍ୟର କାର୍ଯ୍ୟରେ କିଛି ବ୍ୟତିକ୍ରମ ଦେଖିଲେ କ୍ରୋଧ ସମ୍ବରଣ କରି ପାରନ୍ତି ନାହିଁ । ତେଣୁ ତାଙ୍କୁ ସମସ୍ତଙ୍କର ଭାରି ଡର । ରାସ୍ତାରେ ସିଏ ଯାଉଥିଲେ, ପିଲାମାନେ ଲୁଚିଯାନ୍ତି କିମ୍ବା ମୁହଁ ଆଗରେ ପଡିଲେ ଆଡ ହୋଇଯାନ୍ତି ।

ରାମମାଷ୍ଟ୍ରଙ୍କର ଚାରି ଝିଅ । ଦୁଇ ଝିଅ ଖଣ୍ଡପଡାରେ ବିବାହ କଲେ, ଜଣେ ବାଙ୍କିରେ ଓ ଅନ୍ୟଜଣେ ବଲାଡି (ଗଂଜାମ)ରେ ଯିଏ କି ସମୟକ୍ରମେ ଆମ ଗାଁର ସ୍ଥାୟୀ ବାସିନ୍ଦା ହୋଇ ରହିଗଲେ । ସମ୍ଭବତଃ, ସିଏ ଆମ ଗାଁର ବାସିନ୍ଦା ହେବାର ଏକ ସଂଯୋଗ । ରାମମାଷ୍ଟ୍ରଙ୍କର ପୁଅ ନଥିଲେ । ଝିଅ ମାନଙ୍କର ବିବାହ ପରେ ତାଙ୍କ ପତ୍ନୀଙ୍କର ଅକାଳ ମୃତ୍ୟୁ ଘଟିବାରୁ, ସେ ଏକା ହୋଇଗଲେ । ଶିକ୍ଷକତା ଓ ଘର ଜଞ୍ଜାଳ, ଦୁଇ କାମରେ ସାମଞ୍ଜସ୍ୟ ରଖିବା ନିଶ୍ଚିତ ରୂପେ ଏକ କର୍ତ୍ତବ୍ୟନିଷ୍ଠ ବ୍ୟକ୍ତିପାଇଁ କଡ଼ା ପରୀକ୍ଷା । ତେବେ ଉମା ଦେବୀ, ଯିଏ ବଲାଡିରେ ବିବାହ କଲେ, ତାଙ୍କ ସ୍ୱାମୀ ବନ ବିଭାଗରେ ଚାକିରି କରୁଥଲେ । ତେଣୁ ଉମା ଦେବୀ ନନାଙ୍କ ସେବା କରିବା ଓ ପିଲାଙ୍କ ପାଠପଢା କଥା ବୁଝିବା ବିଷୟକୁ ବିଚାର କରି ନନାଙ୍କ ପାଖରେ ରହିବାକୁ ଉଚିତ୍ ମନେକଲେ । ପୁନଶ୍ଚ, ନିଜ କୁଳ ରକ୍ଷାପାଇଁ ମିଶ୍ର ମହାଶୟ ଚାରି ଝିଅଙ୍କ ଅଂଶରୁ କୌଣସି ଏକ ନାତିକୁ ପୋଷ୍ୟ କରିବା ସିଦ୍ଧାନ୍ତ ନେବା ପରେ, ଉମାଦେବୀଙ୍କ ବଡ଼ ପୁଅ ସୁବାସ ଅଜାଙ୍କର ପୋଷ୍ୟ ହେବା କଥା ସ୍ଥିର ହେଲା । ସେଇ ନିଷ୍ପତ୍ତି ହିଁ ଦଣ୍ଡପାଣି ମହାପାତ୍ରଙ୍କର୍ ଉମାଦେବୀଙ୍କ ସ୍ୱାମୀ ଆମ ଗାଁରେ ରହିବା ଅନ୍ୟ ଏକ କାରଣ ଥିଲା । ପତ୍ନୀଙ୍କ ବିୟୋଗ ପରେ ମିଶ୍ର ମହାଶୟ ଯଦିଓ ଦୁଃଖରେ ସମୟ କାଟୁଥିଲେ, ଝିଅ ଘରେ ରହିବା ପରେ, ସଂସାର ପୁଣି ସହଜ ସୁନ୍ଦର ହୋଇଗଲା । ମିଶ୍ର ମହାଶୟ ଗାଁର ସଭା ସମିତି ଯାନିଯାତ୍ରା ପର୍ବ ଉତ୍ସବ ଆଦି ସମସ୍ତ ସମୂହ କାର୍ଯ୍ୟରେ ଯୋଗ ଦିଅନ୍ତି । ଗାଁର ସମସ୍ୟା ପ୍ରତି ସର୍ବଦା ସିଏ ତତ୍ପର ଥାଆନ୍ତି । ତାଙ୍କ ଖମାରୀ ହେଲେ ଅଭିମନ୍ୟୁ ମହାପାତ୍ର । ଜମିଜମା ସହ ଘରର ଯାବତୀୟ କଥା ସିଏ ଦେଖାଶୁଣା କରୁଥିଲେ ।

## ଜୟକୃଷ୍ଣ ମିଶ୍ର

ପଟ୍ଟଯୋଶୀ ବଂଶର ଅନ୍ୟ ଦାୟାଦ ୰ଜୟକୃଷ୍ଣ ମିଶ୍ର । ଅମାୟିକ ବ୍ୟକ୍ତି, ଖୁବ୍ କମ୍ କଥା କୁହନ୍ତି । ଆମେ ଦେଖିଲା ସମୟକୁ, ବୟସ ଅତିକ୍ରାନ୍ତ ହେତୁ, ବିଶେଷ ଚଲାବୁଲା କରୁ ନଥିଲେ । ଗୋଟିଏ ପୁଅ । ଶ୍ରୀଯୁକ୍ତ ଦିବାକର ମିଶ୍ର ପେଷାରେ ଶିକ୍ଷକ । ମାଟ୍ରିକ୍ ପାସ୍ କରିବା ପରେ ଆମ ଗାଁ ବିଦ୍ୟାଳୟରେ କେତେ ମାସ ପାଇଁ ଆମକୁ ପଢାଇଥିଲେ । ତା'ପରେ ସେ କଟକ ପ୍ୟାରୀ ମୋହନ ଆକାଡେମୀରେ ଶିକ୍ଷକତା କରି ଅବସର ନେଲେ ଓ ଗାଁରେ ରହି ନିରାଡମ୍ବର ସୁଖି ଜୀବନ ବିତାଉଅଛନ୍ତି ।

## ୰ହାଡୁବନ୍ଧୁ ମିଶ୍ର

ନାମ ହାଡୁବନ୍ଧୁ ସଭିଙ୍କର ବନ୍ଧୁ
ଦୀନହୀନଙ୍କର ସାହା।
ଆହା କରିବାକୁ କେହି ଯେବେ ନାହିଁ
ତା'ଦୁଆରେ ସିଏ ଠିଆ।।

ସମସ୍ତ ଗୁଣରେ ପରିପୂର୍ଣ୍ଣ ସିଏ
ସଦା ହସ ହସ ମୁଖ।
ପର ଆପଣାର ଭେଦଭାବ ନାହିଁ
ନୁହନ୍ତି କେବେ ବିମୁଖ।।

ସୁନ୍ଦର ସୁମୁଖ ଆଭା ଝଟକଇ
ଶତ୍ରୁ ବି ମୋହ ହୁଅଇ।
ବିଷମ ସମୟ ଥିଲେବି ତାଙ୍କର
ହତୋତ୍ସାହ ଭାବ ନାହିଁ ।।

ଗ୍ରାମର ସମସ୍ୟା ତାହାର ଉନ୍ନତି
ତାଙ୍କରି ଏକଇ ଲକ୍ଷ୍ୟ।

ସେଥିପାଇଁ ସିଏ ଗ୍ରାମ ସଭାପତି
କାର୍ଯ୍ୟୀ ପଦପାଇଁ ଦକ୍ଷ ।।

ସିଏ ଚାଲୁଥିଲେ ରାସ୍ତା ଦୁଲୁକଇ
ବାଟୋଇ ବାଟ ଛାଡଇ ।
ତାଙ୍କରି ପ୍ରଚେଷ୍ଟା ପ୍ରେରଣାରେ ସିନା
ଗ୍ରାମ ଆଦର୍ଶ ବୋଲାଇ ।।

ଉଚ୍ଚ ବିଦ୍ୟାଳୟ ସମ୍ପାଦକ ଥାଇ
ସୁପରିଚାଳନା କଲେ ।
ଦୂରଦୂରାନ୍ତରୁ ଏଠି ପାଠ ପଢି
କେତେ ଛାତ୍ର ମେଧା ହେଲେ ।।

ସରପଞ୍ଚ ହୋଇ ଆମ ଅଞ୍ଚଳର
ନକ୍ସା ବଦଳାଇ ଦେଲେ ।
ଅନାମଧେୟ ଏ କଜଳାଇପଲ୍ଲୀ
ନାମ ସଭିଏଁ ଧରିଲେ ।।

ଦାନ ଅଭ୍ୟାଗତ ଯଜ୍ଞ ଭୋଜିଭାତ
ସବୁ ଅକୁଣ୍ଠ ଚିତ୍ତରେ ।
କରିଥିଲେ ସିଏ ଲୋକ ଝୁରୁଛନ୍ତି
ଭାଳନ୍ତି ସର୍ବେ ମନରେ ।।

ତାଙ୍କ ବିୟୋଗରେ ସର୍ବେହେଲେ ଦୁଃଖୀ
କାଳଜୟୀ ସେ ପୁରୁଷ ।
ଏତିକି ପ୍ରାର୍ଥନା ସେ ମହାନ ଆତ୍ମା
ପାଉ ପ୍ରଭୁଙ୍କ ପରଶ ।।

୰ହାଡୁବନ୍ଧୁ ମିଶ୍ରଙ୍କ ପିତା ୰ଚିନ୍ତାମଣି ମିଶ୍ର । ତାଙ୍କ ଜନ୍ମ ସ୍ଥାନ କରଡା ରଘୁନାଥପୁର ଶାସନ । ଗ୍ରାମ ପ୍ରତିଷ୍ଠା ହେବା ସମୟରେ ଯେଉଁ କେତେକ ପରିବାର

ଆସି ବସତି ସ୍ଥାପନା କଲେ, ସେମାନଙ୍କ ମଧ୍ୟରୁ ସେ ଜଣେ । ଚିନ୍ତାମଣି ମିଶ୍ରଙ୍କର ତିନି ପୁଅ ଓ ଚାରି ଝିଅ । ବଡ ପୁଅ ହାଡୁବନ୍ଧୁ, ମଝିଆ ଲକ୍ଷ୍ମଣ ଓ ସାନ ଲୋକନାଥ । ବଡ ଝିଅ ସାରଙ୍ଗଧରପୁର କାଙ୍ଗାଳି ମହାପାତ୍ରଙ୍କୁ ବିବାହ କରିଥିଲେ । (କାଙ୍ଗାଳି ମହାପାତ୍ରଙ୍କ ବଂଶ ଓ ଆମ ମହାପାତ୍ର ବଂଶର ମୂଳ ଉତ୍ସ ଏକ । ଆମ ବଂଶ ସେହି ଗ୍ରାମରୁ ଏଠାକୁ ଆସିଥିଲୁ) । ଚିନ୍ତାମଣି ମିଶ୍ରଙ୍କର ଅନ୍ୟ କନ୍ୟା ମାନଙ୍କ ମଧ୍ୟରୁ ଅପ୍ସରା ଆମ ଦଦେଇ ନାରାୟଣ ମିଶ୍ରଙ୍କୁ ବିବାହ କରିଥିଲେ । ଲକ୍ଷ୍ମୀ ରାବେରା ଓ ପଦ୍ମା କରଡା ବିଶ୍ୱନାଥ ମିଶ୍ରଙ୍କ ପ୍ରଥମ ପତ୍ନୀ (ମୋର ପୀୟୁଷୀ ନାନୀ)ଙ୍କ ବିୟୋଗ ହୋଇଯିବା ପରେ ତାଙ୍କୁ ବିବାହ କରିଥିଲେ । ପ୍ରକାଶ ଥାଉକି, ସେ ସମୟରେ, ଗମନା ଗମନର ସୁବିଧା ନ ଥିବା ହେତୁ, ପାଖ ଗାଁରେ ଓ ବନ୍ଧୁରେ ବନ୍ଧୁ ବଢାଇ ସମ୍ପର୍କକୁ ଅତି ନିବିଡ କରିବା ପ୍ରଥା ପ୍ରାୟ ଦେଖିବାକୁ ମିଳୁଥିଲା ।

୰ହାଡୁବନ୍ଧୁ ମିଶ୍ର ଆମ ଗାଁର କାର୍ଯୀ ଓ ନିରବଚ୍ଛିନ୍ନଭାବେ ସଭାପତି ମଧ୍ୟ ଥିଲେ । ୧୯୫୩ ମସିହାରେ ଗ୍ରାମ ପଂଚାୟତ କାର୍ଯ୍ୟାଳୟ ସ୍ଥାପନା ହେବାପରେ, ସେ ନାଏବ ସରପଞ୍ଚ ରୂପେ ନିର୍ବାଚିତ ହେଲେ ଓ ତା'ପର ଥର ସରପଞ୍ଚ ହୋଇ ଅଞ୍ଚଳର ବହୁବିଧ ଉନ୍ନତିମୂଳକ କାର୍ଯ୍ୟ ହାତକୁ ନେଇ ସୁନାମ ଅର୍ଜନ କରିଥିଲେ । ତାଙ୍କ ସୁନ୍ଦର ଚେହେରା ଓ ମୁଖ ମଣ୍ଡଳର ଆଭା ପ୍ରତି ଯେ କେହି ବ୍ୟକ୍ତି ଆକର୍ଷିତ ହେବା ସ୍ୱାଭାବିକ । କଜଳାଇପଲ୍ଲୀ ପରି ଏକ ନିପଟ ମଫସଲ ଗାଁରେ ସ୍ୱାସ୍ଥ୍ୟସେବା ଯୋଗାଇବା ଲକ୍ଷ୍ୟରେ ସେ ଅହରହ ପ୍ରଚେଷ୍ଟା ଚଳାଇ ଅବଶେଷରେ କୃତକାର୍ଯ୍ୟ ହୋଇ ପାରିଥିଲେ । ପଡୋଶୀ ଗ୍ରାମମୁଖ୍ୟମାନଙ୍କ ସହ ସରକାରୀସ୍ତରରେ ସେ ଯେପରି ସମ୍ପର୍କ ସ୍ଥାପନା କରିପାରିଲେ ତାରି ଫଳସ୍ୱରୂପ ଆମ ଗାଁରେ ଏକ ଡାକ୍ତରଖାନା ସ୍ଥାପନା ହେବା ସମ୍ଭବ ହୋଇପାରିଲା । ସେ ଆମ ହାଇସ୍କୁଲ ସାରସ୍ୱତ ଲୋକ ବିଦ୍ୟାପୀଠର ସମ୍ପାଦକ ମଧ୍ୟ ଥିଲେ ।

ସେ ଜଣେ ପ୍ରତିଷ୍ଠାବାନ ବ୍ୟକ୍ତି । ଗାଁର ସର୍ବାଙ୍ଗିନ ଉନ୍ନତି ପାଇଁ ତାଙ୍କ ଅବଦାନ ଅବିସ୍ମରଣୀୟ । ତାଙ୍କ ଉଚ୍ଚ ଚିନ୍ତାଧାରା ଓ ବଳିଷ୍ଠ ନେତୃତ୍ୱ ଏଇ ନିପଟ ମଫସଲ ଗାଁକୁ ଏକ ଆଦର୍ଶ ଗାଁରେ ପରିଣତ କରିଥିବା କଥା ସବୁଠି ଚର୍ଚ୍ଚା ହୁଏ ।

ତାଙ୍କ ପ୍ରତି ଈଶ୍ୱର ସଦା ସଦୟ । ତାଙ୍କ ଉଚ୍ଚ ଆଶା ଓ ଅଭିଳାଷାକୁ ନେଇ ତାଙ୍କ ପୁଅମାନେ ମଧ୍ୟ ରାଜ୍ୟ ଓ ରାଜ୍ୟ ବାହାରେ ଭିନ୍ନ ଭିନ୍ନ ପଦପଦବୀରେ ଉଚ୍ଚ

ଆସନ ଅଳଙ୍କୃତ କରି ସୁନାମ ଅର୍ଜନ କରିଛନ୍ତି । ତାଙ୍କର ଛଅ ସୁଯୋଗ୍ୟ ପୁତ୍ର ମଧ୍ୟରୁ ଜ୍ୟେଷ୍ଠ ପୁତ୍ର ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ମିଶ୍ର (କୁନ ଭାଇନା)ଙ୍କ ବିଷୟରେ ସମ୍ୟକ ଉଲ୍ଲେଖ କରିବା ସମୀଚିନ । ଶିକ୍ଷାଗତ ଯୋଗ୍ୟତା ଦୃଷ୍ଟିରୁ ବିଚାର କଲେ, ଆମ ଗ୍ରାମର ବାସୁଦେବ ମିଶ୍ର ଓ ସୋମନାଥ ଆଚାର୍ଯ୍ୟଙ୍କ ପରେ ସେ ହେଉଛନ୍ତି ଆମ ଗାଁର ତୃତୀୟ ଶିକ୍ଷିତ ବ୍ୟକ୍ତି ଓ ବୈଷୟିକ ଶିକ୍ଷାରେ ପ୍ରଥମ ସ୍ନାତକ । ପ୍ରାଣୀ ବିଜ୍ଞାନରେ ସ୍ନାତକ ହାସଲ କରି ରାଜ୍ୟ ସରକାରଙ୍କ ବିଭିନ୍ନ ପଦବୀରେ କାର୍ଯ୍ୟ କରି ଯଦିଓ ସୁନାମ ଅର୍ଜନ କରିବା ସହ ମନରେ ପ୍ରଗାଢ଼ ଈଶ୍ୱର ଭକ୍ତି ଥିବାହେତୁ ଆତ୍ମ ଚେତନାର ସନ୍ଧାନ ପାଇ ସେବା ନିବୃତ୍ତ ହେବା ପରେ, ଚିଦାନନ୍ଦସ୍ୱାମୀଙ୍କ ନୀତି ଓ ମାର୍ଗକୁ ଅନୁସରଣ କରିନେଲେ । ସେ ସଂସାର ମୋହ ତୁଟାଇ ତ୍ୟାଗ ମାର୍ଗକୁ ଆପଣେଇଲେ ଓ ବର୍ତ୍ତମାନ ସନ୍ୟାସ ବ୍ରତ ଆଚରଣ ସହ ଧର୍ମ ପ୍ରଚାର କାର୍ଯ୍ୟରେ ଲିପ୍ତ ଅଛନ୍ତି ।

## ୰ଲକ୍ଷ୍ମଣ ମିଶ୍ର

ମୁଁ ଯେଉଁ ସମୟର କଥା ଏଠାରେ ଉପସ୍ଥାପିତ କରୁଛି, ସେତେବେଳର ଏ ଗାଁ ଏକ ନିପଟ ମଫସଲ ଓ ଅନାମଧେୟ ପଲ୍ଲୀ । ତେବେ ବି ଲକ୍ଷ୍ମଣ ମିଶ୍ର ଏ ଗାଁର ପାଞ୍ଚ ଜଣ ଚାକିରିଆଙ୍କ ମଧ୍ୟରେ ଜଣେ । ବାସୁଦେବ ମିଶ୍ର (ମହାପାତ୍ର) ବାଣପୁରକୁ ପୋଷ୍ୟ ହୋଇ ଯିବା ସହ ଓଡିଶା ସରକାରାଙ୍କ ପଦସ୍ଥ ଅଧିକାରୀ ହେତୁ ସର୍ବଦା ଗାଁଠାରୁ ଦୂରରେ  ରହିବା ସ୍ୱାଭାବିକ । ତେଣୁ ଗ୍ରାମବାସୀମାନେ  ତାଙ୍କ ବିଷୟରେ ଖୁବ୍ କମ୍ ଜାଣୁଥିଲେ । ଅନ୍ୟ ମାନଙ୍କ ମଧ୍ୟରେ, ସୋମନାଥ ଆଚାର୍ଯ୍ୟ ଉଚ୍ଚ ଇଂରାଜୀ ବିଦ୍ୟାଳୟ ଶିକ୍ଷକ, ରାମଚନ୍ଦ୍ର ମିଶ୍ର ଓ ଜଗନ୍ନାଥ ମିଶ୍ର ନିମ୍ନ ପ୍ରାଥମିକ ବିଦ୍ୟାଳୟ ଶିକ୍ଷକ। ତେଣୁ ଏଇ ତିନିଜଣ ଗାଁରେ ରହି ସାଧାରଣ ଜୀବନ ଯାପନ କରୁଥିଲେ ।

ଲକ୍ଷ୍ମଣ ମିଶ୍ର ନୟାଗଡ ବିଜ୍ଞାପିତ ଅଞ୍ଚଳ ପରିଷଦ ଦପ୍ତରରେ କାମ କରୁଥିବାରୁ ପରିବାର ସହ ସେଠାରେ ରହୁଥିଲେ । ତାଙ୍କ ବଡ଼ଭାଇ ଗାଁର କାର୍ଯୀ । ତାଙ୍କର ଚାଲିଚଳଣୀରେ ଆଧୁନିକ ଛିଟାଥିବା ଭଳି ବାରି ହେଇଯାଉଥିଲା । ସେ ପ୍ରତି ଶନିବାର ଦିନ ଗାଁକୁ ଆସୁଥିଲେ । ଜମିବାଡି ବୁଲି ଦେଖାଚାହାଁ କରୁଥିଲେ । ବିବାହ, ବ୍ରତ ମେଳା ମହୋତ୍ସବ ପର୍ବପର୍ବାଣୀ ଆଦିରେ ପରିବାରସହ ଗାଁକୁ

ଆସୁଥିଲେ । ସେମାନେ ସହରରେ ରହୁଥିବାରୁ ତାଙ୍କ ସହ ମିଳାମିଶା କଲାବେଳେ ଆମମାନଙ୍କର କାହିଁ କେଜାଣି ମନରେ ଭିନ୍ନ ଧାରଣା ହୁଏ । ସେମାନେ କିନ୍ତୁ ଆମ ସହ ମିଶି ଗାଁ ପରିବେଶର ଭରପୂର ମଜା ନେଉଥିଲେ । ସେମାନଙ୍କ ସହରୀ ଅନୁଭୁତି ଶୁଣି ଆମେ ନୂଆନୂଆ କଥା ଜାଣିପାରୁ । ଲକ୍ଷ୍ମଣ ମିଶ୍ର ଜଣେ ନିଷ୍ଠାବାନ ଓ ଦୟାବାନ ବ୍ୟକ୍ତି । ତାଙ୍କ ନୟାଗଡ଼ ରହଣୀ ସମୟର ତଥ୍ୟ ଜାଣିବାପାଇଁ ସୁଯୋଗ ନଥିଲେ ବି ଅବସର ପର ଜୀବନ ସେ ଗାଁରେ ଯେହେତୁ ବିତାଇଲେ, ତାଙ୍କ ବଦାନ୍ୟତା ଓ ଜନ ସଂପର୍କ ଗୁଣ ସଭିଏଁ ଅନୁଭବ କଲେ ଓ ପ୍ରଶଂସା କଲେ । ଗାଁ ମନ୍ଦିରର ଉନ୍ନତି, ପରକୁ ଆର୍ଥିକ ସାହାଯ୍ୟ ଦେବାସହ ଦୁର୍ବଳଶ୍ରେଣୀଙ୍କ ମନୋବଳକୁ ସୁଦୃଢ଼ କରିବାରେ ସେ ସର୍ବଦା ଆଗେଇ ଆସୁଥିଲେ ।

## ୪ ଭାଗୀରଥି ମିଶ୍ର (ଗଡ ଜଟି)

ସ୍ୱର୍ଗତ ଲକ୍ଷ୍ମଣ ମିଶ୍ରଙ୍କ ବଡପୁଅ ଭାଗିରଥୀ (ଜଟି)ର ଅକାଳ ବିୟୋଗ ଖବର ସମସ୍ତ ଗ୍ରାମବାସୀଙ୍କ ପାଇଁ ଏକ ଶକ୍ତ ଧକ୍କା । ଯିଏ ଶୁଣିଲା ସ୍ତବ୍ଧ ହୋଇଗଲା। ବିଶ୍ୱାସ ହେଲାନି । କାରଣ ସେ ମୃତ୍ୟୁ ସ୍ୱାଭାବିକ ନଥିଲା । ଏକ ମର୍ମନ୍ତୁଦ ସଡକ ଦୁର୍ଘଟଣାରେ ତାଙ୍କର ମୃତ୍ୟୁ ଘଟିଲା । ଏକା ନୁହେଁ, ସାଥିରେ ବୋଉ ଓ ପତ୍ନୀ ବି ଚାଲିଗଲେ । ଗାଁର ଆବାଳବୃଦ୍ଧବନିତା ଗଭୀର ଦୁଃଖରେ ମ୍ରିୟମାଣ ହେବା ସ୍ୱାଭାବିକ । ଜଟି ଭାଇନାଙ୍କ କଥା ଭାରି ମନେପଡେ । ସେ ଆମ ଗାଁର ପ୍ରଥମ ଇଂଜିନିୟର । ଗାଁର ବାସିନ୍ଦା ହୋଇବି ତାଙ୍କୁ ଗାଁରେ ବେଶି ଲୋକ ଜାଣିନଥିଲେ। କାରଣ ତାଙ୍କ ଜନ୍ମ ଓ ପାଠପଢ଼ା ବି ନୟାଗଡରେ, ତେଣୁ ଗାଁର ବେଶି ଲୋକ ତାଙ୍କ ସଂସ୍ପର୍ଶରେ ଆସିନଥିଲେ । କେବଳ ଶେଷ କିଛିବର୍ଷ ସେ ଗାଁରେ କଟାଇଥିଲେ । ଅବଶ୍ୟ ପୁଣ୍ୟପର୍ବ, ମେଳା ମହୋତ୍ସବ ଦିନରେ ନନାଙ୍କ ସାଙ୍ଗରେ ଦିନେ ଦୁଇଦିନ ପାଇଁ କେବେକେବେ ଆସନ୍ତି କିନ୍ତୁ କାହାସହ ବେଶି ମିଳାମିଶା କରନ୍ତି ନାହିଁ । ତାଙ୍କର ଉପସ୍ଥିତି ଆମେ ଅନୁଭବ କଲୁ ଯେତେବେଳେ ଆମ ଗାଁ ପିଲାମାନେ ତାଙ୍କ ପ୍ରେରଣାରେ ଏକ ନାଟକ ମଞ୍ଚସ୍ଥ କଲେ । ଆମ ଗାଁରେ ଆଗରୁ ଯେଉଁ କେତେଥର ନାଟକ ମଞ୍ଚସ୍ଥ କରାଯାଇଚି, ତାଙ୍କ ନିର୍ଦ୍ଦେଶନାରେ ମଞ୍ଚସ୍ଥ ହୋଇଥିବା ଚକ୍ରି ବହି, ଉଚ୍ଚ କୋଟିର ସାଫଲ୍ୟ ଲାଭ କରିଥିଲା । ମୁଖ୍ୟ ଭୂମିକା ବଭ୍ରୁବାହନ ଚରିତ୍ରରେ ସେ ଯେଉଁ ନିଖୁଣ ଅଭିନୟ କରିଥଲେ, ତାହା ଅଦ୍ୟାବଧି ଦର୍ଶକ ମନେରଖିଛନ୍ତି । ତାଙ୍କ ପାଖରେ ଏତେ

କଳାତ୍ମକ ଗୁଣ ଥିବା କଥା ଆଗରୁ ଆମେ କେହି ଜାଣିନଥିଲୁ । ସେଇ ନାଟକ ମଞ୍ଚସ୍ଥ ହେବା ଦିନଠାରୁ ତାଙ୍କସହ ମୋର ଘନିଷ୍ଠତା ସହ ତାଙ୍କ କଳାତ୍ମକ ଗୁଣପ୍ରତି ମୋର ଆକର୍ଷଣ ବଢିଲା । ଇଂଜିନିୟରିଂ ଡିଗ୍ରୀ ହାସଲ କରିବି ଉପଯୁକ୍ତ ନିଯୁକ୍ତି ସୁଯୋଗ ହାସଲ କରିନପାରିବା ଯୋଗୁଁ ତାଙ୍କୁ ବହୁ ସଂଘର୍ଷ କରିବାକୁ ପଡିଥିଲା । ତେବେ ତାଙ୍କ ପ୍ରେରଣା ଓ ଉତ୍ତମଗୁଣର ପ୍ରଭାବ ଆମେ ସମସ୍ତ ସାଙ୍ଗମାନେ ଅନୁଭବ କରୁଅଛୁ ।

## ଲୋକନାଥ ମିଶ୍ର

ଗାଁର ଏକମାତ୍ର ପ୍ରତିଭାଶାଳୀ ପରିବାର କହିଲେ କାର୍ଯୀଘର । ହାଡିବନ୍ଧୁ ମିଶ୍ର କାର୍ଯୀ ଓ ତାଙ୍କର ନାନା ଜଂଜାଳ । ତେଣୁ ଲୋକନାଥ ମିଶ୍ର ଗାଁକଥା, ବୁଝୁଥିଲେ । ତାଙ୍କୁ ସମସ୍ତେ ସାନକାର୍ଯୀର ମାନ୍ୟତା ଦେଇଥିଲେ । ମେଳାପୀ ଲୋକ ଓ ଲୋକଙ୍କ ସୁଖ  ଦୁଃଖରେ ଭାଗି ହେଉଥିଲେ ।

## ଜଗନ୍ନାଥ ମିଶ୍ର

ଜଗନ୍ନାଥ ମିଶ୍ର କରଡା ରଘୁନାଥପୁରର ମୂଳ ବାସିନ୍ଦା । ଆମ ଗାଁକୁ ତାଙ୍କ ଭାଇ ମାନଙ୍କ ସହ ଆସି ବସତିସ୍ଥାପନା କଲେ ।  ସେ ଆମ ଗାଁ ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକତା କରୁଥିଲେ । ସିଏ ମୋର ଶିକ୍ଷକ (ଗୁରୁ) ଥିଲେ । ଶିକ୍ଷାର ପ୍ରଥମ ସୋପାନରେ ପାଦ ଦେବାରେ ସିଏ ମୋତେ ସାହାଯ୍ୟ କରିଥିଲେ ଓ ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ତମ ଜ୍ଞାନ ଦେବାରେ ସେ ସାହାଯ୍ୟ କରିଥିବାରୁ ମୁଁ ତାଙ୍କ ନିକଟରେ ଚିର ଋଣୀ । ମୋ' ପଢାର ଉନ୍ନତି ପାଇଁ ସେ ତାଙ୍କ ଘରେ ମୋ' ପାଇଁ କିଛି ସମୟ ଦେଇ ପଢାଇଥିବା ହେତୁ, ମୁଁ ତାଙ୍କପ୍ରତି କୃତଜ୍ଞ । ତାଙ୍କ ସମୟାନୁବର୍ତ୍ତିତା ଓ କର୍ତ୍ତବ୍ୟ ନିଷ୍ଠା ଗୁଣ ବାଲ୍ୟକାଳରେ ମୋତେ ଯେଉଁ ଶିକ୍ଷା ଦେଲା, ତାହା ହିଁ ମୋର ଜୀବନ ଶୈଳୀର ପ୍ରେରଣାର ଉତ୍ସ ।  ମୁଁ ତାଙ୍କରି ଆଦର୍ଶକୁ ପାଥେୟ କରି ଅଜିସୁଦ୍ଧା ଚଳିଆସୁଛି । ଶୁଭ୍ର ଧୋତି ଓ କୁର୍ତ୍ତା ସାଙ୍ଗକୁ ଉତ୍ତରୀୟ,  ଶାନ୍ତ ମୁଖମଣ୍ଡଳ, ଧୀର ଚାଲି, ଚନ୍ଦନ ଟିପା, ଏସବୁ ଭାରି ଆକର୍ଷଣ କରେ ଓ ଭୟ ବି ଲାଗେ । ସମୟେ ସମୟେ କ୍ରୋଧ ପ୍ରକାଶ କଲେ, କୁହନ୍ତି ବଗୁଲିଆ ।

ତାଙ୍କର ଗୋଟିଏ ପୁଅ ଓ ତିନି ଝିଅ, (ବେଙ୍ଗ, ମାୟା ଓ ଛାୟା) । ବିଧିର ବିଧାନ, ପୁଅଟି ବାର ବର୍ଷ ବୟସରେ ଅକାଳରେ ମୃତ୍ୟୁ ବରଣ କରିବାରୁ ସେ

ଦୁଃଖରେ ଭାଙ୍ଗି ପଡ଼ିଲେ । ପରେ ସେ ତାଙ୍କ ନାତି (ବଡ଼ ଝିଅର ପୁଅ) ଶରତକୁ ପୋଷ୍ୟ ଗ୍ରହଣ କଲେ । ୰ଜଗନ୍ନାଥ ମିଶ୍ରଙ୍କ ପୁତ୍ର ଶ୍ରୀ ଶରତ ଚନ୍ଦ୍ର ମିଶ୍ର ଜଣେ ମିଷ୍ଟଭାଷୀ ଓ ମେଳାପୀ ମଣିଷ । ସେ ପିଲା ବୁଢା ସମସ୍ତଙ୍କ ସହ ମିଶିଥାନ୍ତି । ସେ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଶିକ୍ଷକତ୍ୱ କରି ଶାରିରୀକ ଶିକ୍ଷା ତାଲିମ ପ୍ରଦାନ କରିବା ସହ ଛାତ୍ର ମାନଙ୍କର ଉଜ୍ଜ୍ୱଳ ଭବିଷ୍ୟତ ପାଇଁ ଯେଉଁ ନୀତି ଶିକ୍ଷା ଦେଉଥିଲେ, ତାହା ସର୍ବତ୍ର ଚର୍ଚ୍ଚା ହୁଏ । ତାଙ୍କର ଦୁଇ ପୁଅ ଓ ତିନି ଝିଅ ।

## ରାମକୃଷ୍ଣ ମିଶ୍ର

ସେ ଆମ ଗ୍ରାମର ମୂଳ ବାସିନ୍ଦା ନୁହଁନ୍ତି । ସେ କରଡା ରଘୁନାଥପୁର ଶାସନ ନିବାସୀ । ସମୟକ୍ରମେ ସିଏ · ଆସି ଆମ ଗାଁରେ ବସବାସ କଲେ । ସେ ହାଡୁବନ୍ଧୁ ମିଶ୍ରଙ୍କର କୁଟୁମ୍ବର ଏକ ଅଂଶ ହୋଇଥିବାରୁ ଏ ଗାଁପ୍ରତି ଆକର୍ଷିତ ହେଲେ । ସେ ମୃତ୍ତିକା ସଂରକ୍ଷଣ ବିଭାଗରେ ଚାକିରି କରିଥିଲେ । ଖୁସି ମିଜାସର ଲୋକ ଓ ସମସ୍ତଙ୍କ ସହ ଭଲ ସମ୍ପର୍କ । ମଜା ମଜା କଥା କହି ଅନ୍ୟର ମନ କିଣିବାରେ ସେ ପାରଙ୍ଗମ ଥିଲେ । ସେ ଗାଁର ରାମକୃଷ୍ଣ ଭାଇନା । ସେ ତାସ ଖେଳିବାରେ ଧୁରନ୍ଧର । ମଣ୍ଡପରେ ତାସର ଆସର ଜମେ ଓ ଖେଳର କୋଳାହଳରେ ଦ୍ୱିପହରଟା ଗାଁର ପରିବେଶ ଚଳଚଞ୍ଚଳ ହୋଇଉଠେ । ତାଙ୍କର ଦୁଇ ପୁଅ ଓ ଗୋଟିଏ ଝିଅ ( ଭୋବନି, ଦାମ ଓ ଝିଅ ମାମା) । ହସ ଖୁସିର ସଂସାର, କିନ୍ତୁ ସାନ ପୁଅ ଦାମର ଅକାଳ ବିୟୋଗ ସମସ୍ତଙ୍କ ହସ ଖୁସି ହଜେଇ ଦେଲା । ଦାମ ବିବାହିତ ଓ ଗୋଟିଏ ସନ୍ତାନର ପିତା ବି । ଚାକିରି କରିଥିଲା । ସବୁ ଓଲଟ ପାଲଟ ହୋଇଗଲା । ବଡ଼ ପୁଅ ବେରୋଜଗାର । ଗାଁରେ ରହିବା ହେତୁ ସମୟେ ସମୟେ ବଦନାମର ବୋଝ ମୁଣ୍ଡାଇବାକୁ ପଡିଲା । ତେବେ, ରାମକୃଷ୍ଣ ଭାଇନା ଲମ୍ବାଦିନ କାର୍ଯ୍ୟରତ ରହିବାରୁ ସବୁ ବୋଝ ମୁଣ୍ଡାଇ ଚାଲିଲେ । କିନ୍ତୁ, ପୁଅର ବଦନାମକୁ ନେଇ ସେ ଗାଁର ଘର ବିକ୍ରି କରି ଶରଣକୁଳରେ ବସବାସ କଲେ । ଗାଁରୁ ସ୍ଥାନାନ୍ତର ହେବାପରେ ତାଙ୍କ ବିଷୟରେ ଖବର ବିଶେଷ ରଖି ହେଲାନାହିଁ । ଶୁଣାଯାଏ, ଦାମର ସ୍ତ୍ରୀ ତା'ର ସନ୍ତାନସହ ଭୁବନେଶ୍ୱରରେ ରହୁଚି । ଭୋବନି ମଧ୍ୟ ତା'ର ପରିବାର ସହ ସ୍ୱଚ୍ଛନ୍ଦ ଜୀବନ ବିତାଉଛି । ସେ ୧ଡଗାଂ ନିକଟସ୍ଥ ଗଂଜାମ ସରହଦରେ ଏକ ଫଳ

ବଗିଚା କରି ଭଲ ରୋଜଗାର କରୁଚି । ରାମକୃଷ୍ଣ ଭାଇନା ଓ ଭାଉଜ କେବେଠୁ ଆର ପାରିକୁ ଚାଲିଗଲେଣି ।

## ବୈଦ୍ୟନାଥ ଆଚାର୍ଯ୍ୟ

ଆମ ଗ୍ରାମର ପ୍ରମୁଖ ବ୍ୟକ୍ତିଙ୍କ ମଧ୍ୟରେ ସେ ଥିଲେ ଜଣେ । ତାଙ୍କର ଆର୍ଥିକ ସ୍ଥିତି ସ୍ୱଚ୍ଛଳ ଥିଲା । ସେ ଜଣେ ପରୋପକାରୀ ବ୍ୟକ୍ତି ଥିଲେ । ସେ ପରିବାରର ଚାଲିଚଳଣୀ ଓ ଢଙ୍ଗଢାଙ୍ଗରୁ ତାଙ୍କ ବଂଶାଭିଜାତ୍ୟ ବେଶ୍ ବାରି ହୋଇଯାଉଥିଲା । ଯଦିଓ ଆଚାର୍ଯ୍ୟ ମହାଶୟଙ୍କ ମନର ବେଦନା ତାଙ୍କ କାର୍ଯ୍ୟକଳାପ କିମ୍ୱା ବାର୍ତ୍ତାଳାପରୁ କେବେବି ସୂଚନା ମିଳୁ ନ ଥିଲା, ସନ୍ତାନ ଦୁଃଖ ହିଁ ତାଙ୍କ ଦୁଇପ୍ରାଣୀଙ୍କୁ ସର୍ବଦା ମର୍ମାହତ କରୁଥିବା କଥା ଅନୁମାନ କରି ହେଉଥିଲା । ଶୁଣାଯାଏ, ଅଠରଟି ସନ୍ତାନର ମା' ହୋଇବି ଅଚାର୍ଯ୍ୟାଣୀ ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା ବ୍ୟତୀତ ଅନ୍ୟ ସମସ୍ତଙ୍କୁ ବାଲ୍ୟାବସ୍ଥାରୁ ହିଁ ହରାଇଥିଲେ । ଯେଉଁ ପୁଅ ଆଶାର ଆଲୋକ ହୋଇ ଘର ସଂସାର କଲା ଓ ଆଚାର୍ଯ୍ୟ ବଂଶର ଦାୟାଦ ହେବାକୁ ଯୋଗ୍ୟ ବିବେଚିତ ହେଲା, ସେ ମଧ୍ୟ ଯୁବା ବୟସରେ ଅକାଳ ମୃତ୍ୟୁ ବରଣକଲା। ତାଙ୍କ ନାମ ଅଲେଖ (ଲୋକନାଥ)। ତାଙ୍କର ଝିଅର ନାମ ପାଲ୍ଲି । ସେ କରଡା ରଘୁନାଥପୁର ଶାସନରେ ବିବାହ କରିଥିଲେ । କିନ୍ତୁ ପାଲ୍ଲି ନାନୀ ସ୍ୱାମୀଙ୍କ ଚାକିରି ସ୍ଥାନ ବ୍ରଜରାଜନଗରକୁ ନିଜର ବାସସ୍ଥାନ କରିନେଲେ । ଏବେ ପରିଣତ ବୟସରେ ଅବଶ୍ୟ ସେ କରଡାରେ ରହି ସ୍ୱଚ୍ଛନ୍ଦ ଜୀବନ ବିତାଉଛନ୍ତି ।

ଆଚାର୍ଯ୍ୟ ମହାଶୟଙ୍କ ଇଚ୍ଛାରେ ତାଙ୍କ ବୋହୂ କୁଳ ରକ୍ଷାପାଇଁ ବଡ଼ ଭଣଜା ସୋମନାଥକୁ ପୋଷ୍ୟପୁତ୍ରରୂପେ ଗ୍ରହଣ କଲେ । ସେ କୁମ୍ଭାରିଆ ଶାସନର ମୂଳ ବାସିନ୍ଦା । ତାଙ୍କ ପିତାଙ୍କ ନାମ ୰ନୀଳକଣ୍ଠ ମିଶ୍ର । ସୋମନାଥ ଆଚାର୍ଯ୍ୟ ଆମ ଗାଁକୁ ପୁଅହୋଇ ଆସିବା ପରେ ତାଙ୍କ ନନା ମଧ୍ୟ ପରିବାଚ ସହ ଆମ ଗାଁକୁ ଚାଲି ଆସିଲେ । ସୋମନାଥ ଆଚାର୍ଯ୍ୟ ସମୟକ୍ରମେ ଅଜାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ବଂଶର ଆଭିଜାତ୍ୟ ଓ ବଂଶମର୍ଯ୍ୟାଦା ବଜାୟ ରଖିଲେ ।

ଆମ ଗାଁରେ ୰ବୈଦ୍ୟନାଥ ଆଚାର୍ଯ୍ୟଙ୍କର ଭଲ ନାମ ଥିଲା । ତାଙ୍କରି ଖାନଦାନୀ ଚଳଣୀ ଓ ପରୋପକାର ଗୁଣ ଆମ ଗାଁ କାହିଁକି, ଆଖପାଖ ଗାଁର

ଲୋକମାନଙ୍କୁ ବି ଆକର୍ଷିତ କରୁଥିଲା । ଗୋଛା, ପୁନିପଡା, ଶିମିଳି, ଖଳିସାହି ଆଦି ଆଦିବାସି ଗାଁର ଲୋକମାନେ ତାଙ୍କ ଦ୍ୱାରା ବିଶେଷ ଉପକୃତ ହେଉଥିଲେ । ଜମି ଜମା ସମ୍ପତ୍ତି ସାଙ୍ଗକୁ ପଦା, ଘରଡିହ ଓ ବଗାୟତ ବହୁତ କିଛି ତାଙ୍କ ମାଲିକାନାରେ ଥିଲା । ତାଙ୍କ ଗୋଶାଳା ଗାଈ, ବଳଦ ଓ ପଣ୍ଡାରେ ଭରପୁର ।

ସେ ସମୟରେ ଆଚାର୍ଯ୍ୟ ଘରର ପୁଣ୍ୟପର୍ବ ଓ ଉତ୍ସବ ପାଳଣର କିଛି ଖାସ ବିଶେଷସତ୍ତ୍ୱ ଥାଏ । ଭୋଜି ଭାତର ଆୟୋଜନ ସହ ଖୁବ୍ ଯାକଯମକରେ ଘରର ସବୁ ଉତ୍ସବ ପାଳନ କରାଯାଏ ଓ ଅତିଥିରେ ଉତ୍ସବ ଭରିଯାଏ । ସେଥିରୁ ହିଁ ତାଙ୍କର ଉଦାରପଣ ପ୍ରତୀୟମାନ ହୁଏ । ତାଙ୍କ ବଦାନ୍ୟତାର ଅନ୍ୟ ଏକ ପ୍ରତୀକ ହେଲା, ଲୋକଙ୍କ ଦୁର୍ଦ୍ଦିନରେ ସାହା ହେବା । ରାତି ପାହିଲେ ଦୁଆରେ ହଳିଆ ମୂଲିଆ ଗହଳି ଲାଗିଯାଏ । କାହାକୁ କେଉଁ କାମରେ ବରଗାଯିବ ସେକଥା ଖମାରି ବୁଝିବ । ଖମାରି ହିଁ ତାଙ୍କର ଖାସ୍ ଲୋକ । ଆମେ ଜାଣିବାରେ ବାଲିଆ ସ୍ୱାଇଁ ତାଙ୍କ ଖମାରୀ । ବଡ ବିଶ୍ୱାସୀ । ବହୁ କୁଟୁମ୍ବୀ, ଅଭାବିପକ୍ଷ ହେଲେବି କର୍ତ୍ତବ୍ୟରେ ଅବହେଳା କରେନାହିଁ । ତେଣୁ ତାଙ୍କ ବଦାନ୍ୟତା ପାଇଁ ବାଲିଆ ସ୍ୱାଇଁ ତାଙ୍କ ଆମ୍ବ ତୋଟାରେ ଏକାକୀ ଗୋଟିଏ ଘର ତୋଳି ନିଜ ପରିବାରସହ ବାସ ଆରମ୍ଭ କଲା ଯାହାକି ଏବେ ଏକ ପୂର୍ଣ୍ଣାଙ୍ଗ ସାହି ରୂପ ନେଲାଣି ।

ଵସୋମନାଥ ଆଚାର୍ଯ୍ୟ ଜଣେ ଶାନ୍ତ, ସରଳ ଓ ନିଷ୍ଠାବାନ ବ୍ୟକ୍ତି । ସେ ଆମ ଗାଁର ଜଣେ ଶିକ୍ଷିତ ବ୍ୟକ୍ତି ଓ ଶିକ୍ଷକ ମଧ୍ୟ । ସେ ଅମାୟିକ ଓ ବନ୍ଧୁପ୍ରିୟ ହୋଇଥିବାରୁ ସମସ୍ତଙ୍କ ପ୍ରିୟପାତ୍ର ହୋଇପାରିଥିଲେ । ଆଇଏ ପାସ କରିବା ପରେ ସିଟି ଟ୍ରେନିଂଗ ନେଇ ହାଇସ୍କୁଲ୍‌ରେ ଶିକ୍ଷକତା କଲେ । ଗୋଡିପଡା, ଶରଣକୁଳ ଓ ଆମ ଗାଁ ସ୍କୁଲ, ମଧ୍ୟରେ ତାଙ୍କର ଶିକ୍ଷକତା । ତାଙ୍କୁ ଟିକିଏ କମ୍ ଶୁଭେ । ଆମ ଗାଁର ଭଲମନ୍ଦ, ଯାନିଯାତ୍ରା ଇତ୍ୟାଦିରେ ତାଙ୍କସହ ପରାମର୍ଶ କରାଯାଏ । ସେ ଗାଁର ସେକ୍ରେଟାରୀ ଥିଲେ ଓ ଗାଁ ପାଣ୍ଠି ସହ ମନ୍ଦିର ପାଣ୍ଠିର ହିସାବ ରଖିବା ସହ ପରିଚାଳନା ଦାୟିତ୍ୱ ସୂଚାରୁରୂପେ ତୁଲାଉଥିଲେ । ପ୍ରକାଶ ଥାଉକି, ଲିଙ୍ଗରାଜ ମିଶ୍ର ବଂଚିଥିବା ସମୟରେ, ଗାଁର ଯେ କୌଣସି ଉନ୍ନତି ମୂଳକ କାର୍ଯ୍ୟ ପାଇଁ ସେ ସୋମନାଥ ଆଚାର୍ଯ୍ୟଙ୍କ ସହ ଆଲୋଚନା କରୁଥିଲେ ଓ ସରକାରୀସ୍ତରରେ ଯୋଗାଯୋଗ କରିବା ପାଇଁ ତାଙ୍କୁ ହିଁ ସଂଶ୍ଳିଷ୍ଟ କରାଉଥିଲେ ।

୰ସୋମନାଥ ଆଚାର୍ଯ୍ୟ ବାଉଁଶଗାଡିଆ ତିଆଡି ପରିବାରରେ ବିବାହ କରିଥିଲେ । ତାଙ୍କର ତିନି ପୁଅ ଓ ପାଞ୍ଚ ଝିଅ । ସଦାଶିବ, ଶରତ ଓ ସୁଶାନ୍ତ, ହାର, ରେଣୁ, ପ୍ରେମ, ବିନୋଦିନି ଓ ବସନ୍ତ ।

ଆଚାର୍ଯ୍ୟଙ୍କ ଘରର ଇତିହାସ ପର୍ଯ୍ୟାଲୋଚନା କଲେ ଅନେକ ରୋଚକ ତଥ୍ୟ ମିଳେ । ତାଙ୍କ ଘରେ କୁଆଡେ ହାଡବାଇ ଯା ଆସ କରେ । ଅତି ଜଣାଶୁଣା ନହେଲେ ତାଙ୍କ ଘରେ ପ୍ରବେଶ କରିବାକୁ ଅନେକେ ଭୟ କରନ୍ତି ।

## ନୀଳକଣ୍ଠ ମିଶ୍ର

୰ନୀଳକଣ୍ଠ ମିଶ୍ର ନୟାଗଡ ଜିଲ୍ଲା ଅନ୍ତର୍ଗତ ମାଛିପଡା ନିକଟସ୍ଥ କୁମ୍ଭାରିଆ ଶାସନର ମୂଳ ବାସିନ୍ଦା ଥିଲେ । ସେ ଆମ ଗାଁ ବୈଦ୍ୟନାଥ ଆଚାର୍ଯ୍ୟଙ୍କ ଝିଅକୁ ବିବାହ କରିଥିଲେ । ତାଙ୍କ ଜ୍ୟେଷ୍ଠ ପୁତ୍ର ସୋମନାଥ ମାମୁଁଙ୍କୁ ଦତ୍ତ ହେବାପରେ ପରିବାରର ଅନ୍ୟ ସଦସ୍ୟ ମଧ୍ୟ ଆମ ଗାଁକୁ ଚାଲିଆସିଲେ ଓ ଶ୍ୱଶୁରଙ୍କ ଆଶ୍ରୟରେ ରହି ଜୀବିକା ଆରମ୍ଭ କଲେ । ତାଙ୍କର ଦୁଇ ପୁଅ ଓ ଦୁଇ ଝିଅ । ଜ୍ୟେଷ୍ଠ ଅଜାଙ୍କୁ ଦତ୍ତ ହେବାପରେ କନିଷ୍ଠ ଶ୍ରୀ ଲକ୍ଷ୍ମଣ ମିଶ୍ର ସହ ଝିଅ ଅଗାଧେଇ ଓ ରେବକୁ ନେଇ ତାଙ୍କ ଘର ସଂସାର । ନୀଳକଣ୍ଠ ମିଶ୍ରଙ୍କୁ ଦେଖିବା ମୋର ଝାପ୍ସା ମନେପଡେ କାରଣ ମୁଁ ସେ ସମୟରେ ବହୁତ ଛୋଟ ଥିଲି । ଆମେ ଦଦେଇଙ୍କ ସହ ଏକାନ୍ନ ପରିବାରରେ ଥିବା ସମୟରେ, ମୋର ନାନି କନକର ଲକ୍ଷ୍ମଣ ମିଶ୍ରଙ୍କ ସହ ସେ ସମୟର ବାଲ୍ୟବିବାହ ପ୍ରଥା ଅନୁଯାୟୀ ବିବାହ ସମ୍ପନ୍ନ ହୋଇଥିଲା । ସେତେବେଳେ ବୟସରେ ମୁଁ ଅତି ଛୋଟ ଥିଲି ଅବଶ୍ୟ, କିନ୍ତୁ ବିବାହ ଉତ୍ସବ ଘଟଣା ମୋର ଝପ୍ସା ମନେପଡୁଛି । ପରେ କିନ୍ତୁ ନାନି ତାଙ୍କ ଶାଶୁଘର ଯିବା ବେଳକୁ ଲକ୍ଷ୍ମଣ ମିଶ୍ରଙ୍କ ନନା ଓ ବୋଉ ଉଭୟଙ୍କର କାଳ ହୋଇଯାଇଥିଲା । ଲକ୍ଷ୍ମଣ ମିଶ୍ର ଅଜାଘରେ ହିଁ ରହୁଥିଲେ । ତାଙ୍କ ଏବର ଘର ସେତେବେଳେ ବୈଦ୍ୟନାଥ ଆଚାର୍ଯ୍ୟଙ୍କର ଶସ୍ୟ ଭଣ୍ଡାର ଘର ଥିଲା । ଯେହେତୁ ମୋର ନାନି ଆଚାର୍ଯ୍ୟଙ୍କ ଘରେ ତା'ର ଶାଶୁଘର ଜୀବନ ଆରମ୍ଭକଲା, ମୋତେ ତାଙ୍କ ଘରକୁ ବାରମ୍ବାର ଯିବାକୁ ହୁଏ ଓ ସମସ୍ତଙ୍କ ସହ ସମ୍ପର୍କ ହେବା ମଧ୍ୟ ସ୍ୱାଭାବିକ । ସେତେବେଳକୁ ବୈଦ୍ୟନାଥ ଆଚାର୍ଯ୍ୟ ମହାଶୟ ଓ ତାଙ୍କ ପତ୍ନୀଙ୍କର ବୃଦ୍ଧାବସ୍ଥା ।

ସୋମନାଥ ଆଚାର୍ଯ୍ୟ ହିଁ ସବୁ ବୁଝୁଥିଲେ । ସୋମନାଥ ଆଚାର୍ଯ୍ୟ ଓ ତାଙ୍କ ପତ୍ନୀ (ବଡନାନି) ମୋତେ ବହୁତ ସ୍ନେହ କରନ୍ତି ।

## ବିଶ୍ୱନାଥ ଆଚାର୍ଯ୍ୟ

ବୈଦ୍ୟନାଥ ଆଚାର୍ଯ୍ୟଙ୍କ ଭାଇ ବୃନ୍ଦାବନ ଆଚାର୍ଯ୍ୟ । ନିସନ୍ତାନ ହେତୁ, ପଲ୍ଲୀଶାସନରୁ ତାଙ୍କ ସମ୍ପର୍କୀୟଙ୍କୁ ପୋଷ୍ୟ ଗ୍ରହଣ କଲେ । କିନ୍ତୁ ସେ ଆତ୍ମହତ୍ୟା କରିଦେବା ପରେ ଚନ୍ଦ୍ରଶେଖରପୁରର ବିଶ୍ୱନାଥଙ୍କୁ ପୋଷ୍ୟ ଗ୍ରହଣ କଲେ । ବିଶ୍ୱନାଥ ଆଚାର୍ଯ୍ୟ କୌଣସି ଏକ ଘଟଣା କ୍ରମରେ, ଆଘାତ ପାଇବାରୁ ତାଙ୍କର ଗୋଟିଏ ଗୋଡ ଅକାମୀ ହୋଇଗଲା ତେଣୁ ସେ ଘରେ ବସି ରହିଲେ । କେବଳ ଗୁଜୁରାଣ ମେଣ୍ଟାଇବା ପାଇଁ ଛୋଟ ପିଲାଙ୍କୁ ଘରେ ବସି ଟିଉସନ କଲେ । ତାଙ୍କ ଶିକ୍ଷାଦାନ ପଦ୍ଧତି ଅତି ଉଚ୍ଚକୋଟିର ଥିବାରୁ ଶିଶୁଗଣ ବହୁ ଉପକୃତ ହେଉଥିଲେ । ତେଣୁ ସଭିଏଁ ଆଜି ପର୍ଯ୍ୟନ୍ତ ତାଙ୍କୁ ମନେ ରଖିଛନ୍ତି । ସେ କମ୍ ବୟସରେ ଇହଧାମ ତ୍ୟାଗ କଲେ । ମୋର ଯାହା ମନେପଡୁଚି, ବିଶ୍ୱନାଥ ଆଚାର୍ଯ୍ୟଙ୍କ ପତ୍ନୀ ସ୍ୱାମୀଙ୍କ ଦେହାନ୍ତ ପରେ ବୈଦ୍ୟନାଥ ଆଚାର୍ଯ୍ୟଙ୍କ ଘରେ ରହୁଥିଲେ, କାରଣ, ଶାଶୁଙ୍କ ବ୍ୟବହାରରେ ଅତିଷ୍ଠ ହୋଇ ସେ ଅଧିକାଂଶ ସମୟ ପିତାଙ୍କ ଘରେ ରହିଲେ । କିନ୍ତୁ ଯେତେବେଳେ ଆସୁଥିଲେ, ଆଚାର୍ଯ୍ୟଙ୍କ ତତ୍ତ୍ୱାବଧାନରେ ନିଜ କନ୍ୟାସହ ତାଙ୍କ ଘରେ ରହି ସମୟ କାଟୁଥିଲେ ।

## କବିରାଜ ଜଗନ୍ନାଥ ରଥ

୰ଜଗନ୍ନାଥ ରଥ ପେଷାରେ ଜଣେ ବୈଦ୍ୟ । ଚିକିତ୍ସା ଶାସ୍ତ୍ରରେ ପ୍ରବୀଣତା ନେଇ ନୟାଗଡ ରାଜା ତାଙ୍କ ପ୍ରତି ପ୍ରସନ୍ନ ହୋଇ ତାଙ୍କୁ ଭେଷଜ ରତ୍ନ ରଥ ଶର୍ମା ଉପାଧିରେ ଭୂଷିତ କରିଥିଲେ । ଆମ ଅଞ୍ଚଳରେ ସେ କବିରାଜ ଜଗନ୍ନାଥ ରଥ ନାମରେ ବେଶ୍ ପରିଚିତ ଥିଲେ । ତତ୍କାଳୀନ ରାଜୁଡା ସମୟରେ, ଏପରି ଏକ ଦୁର୍ଗମ ଅଞ୍ଚଳରେ, ଚିକିତ୍ସାର ଅଭାବ ହେତୁ ବହୁ ରୋଗୀ ଅକାଳବାର୍ଦ୍ଧକ୍ୟ ବିକଳାଙ୍ଗ କିମ୍ୱା ମୃତ୍ୟୁ ବରଣ କରୁଥିଲେ । ତେଣୁ ଜଗନ୍ନାଥ ରଥ କବିରାଜି ଚିକିତ୍ସା ଆରମ୍ଭ କରିବା ପରଠାରୁ ଅଞ୍ଚଳର ସମସ୍ତ ରୋଗୀ ତାଙ୍କ ପାଖରେ ହିଁ ଚିକିତ୍ସା ହେଉଥିଲେ ।

ତାଙ୍କ ଚିକିତ୍ସା ବି ଅବ୍ୟର୍ଥ । ସିଏ ମାଗଣାରେ ରୋଗୀଙ୍କୁ ଚିକିତ୍ସା କରି ଆଶୁ ଆରୋଗ୍ୟ ପ୍ରଦାନ କରିବା ସହ ଜଟିଳ ରୋଗୀମାନଙ୍କୁ ସ୍ୱଳ୍ପ ଖର୍ଚ୍ଚରେ ଭଲ କରୁଥିଲେ । ମୁଁ ତାଙ୍କୁ ଦେଖିଲା ବେଳକୁ ସିଏ ବୁଢ଼ା ହେଇଯାଇଥିଲେ ।

ଜଗନ୍ନାଥ ରଥଙ୍କ ମୂଳ ବାସସ୍ଥାନ ଗଂଜାମ ଜିଲ୍ଲାସ୍ଥ ଆଠଗଣପାଟଣା । ସେ କବିସୂର୍ଯ୍ୟ ବଳଦେବ ରଥଙ୍କ ବଂଶଜ । ତାଙ୍କ ନନା କୌଣସି ଏକ ଘଟଣା କ୍ରମରେ, ଆଠଗଡ ପାଟଣାରୁ ଶରଣକୁଳ ସନ୍ନିକଟ ବରଢି ଶାସନ ଚାଲି ଆସିଥିଲେ । ଜଗନ୍ନାଥ ରଥ, କାଶୀନାଥ ରଥ ଓ ଗୋପୀନାଥ ରଥ ତିନି ଭାଇ । କଜଳାଇପଲ୍ଲୀ ସ୍ଥାପନା ହେବା ସମୟରେ ସେଇ ତିନିଭାଇ ଆମ ଗାଁକୁ ଆସି ବସବାସ କଲେ । ଗୋପୀନାଥ ରଥ ଅପୁତ୍ରିକ ଥିଲେ । ତେଣୁ ଭାଇ ଜଗନ୍ନାଥକୁ ପୋଷ୍ୟ ଗ୍ରହଣ କଲେ ଓ ତୀର୍ଥଯାତ୍ରାରେ ଗଲେ । ତୀର୍ଥଯାତ୍ରା ସମୟରେ ସେ ମୃତ୍ୟୁ ବରଣ କଲେ । ଜଗନ୍ନାଥ ରଥ ଖୁବ ଶାନ୍ତ, ସ୍ଥିର ଓ ସବୁ କାମ ଧିରେ ସୁସ୍ଥେ କରନ୍ତି । ତାଙ୍କର ଗୋଟିଏ ପୁଅ ଓ ପାଞ୍ଚ ଝିଅ ।

ସେ ଜଣେ ପରିଶ୍ରମୀ ଓ ମେଳାପୀ ବ୍ୟକ୍ତି ଥିଲେ । ଆମେ ସିନା ଜାଣୁ ସେ ବୃତ୍ତିରେ  କବିରାଜ, କିନ୍ତୁ ତାଙ୍କର ଜୀବନୀ ଅନୁଶୀଳନ କଲେ ଜଣାଯାଏ, ସେ ବୈଦ୍ୟବୃତ୍ତି ବହୁ ପଛରେ ଆପଣେଇଥିଲେ । ତାଙ୍କର ଅନେକ ଅନ୍ତର୍ନିହିତ ଗୁଣ ଥିଲା । କଳାକୃତି ବିଷୟରେ କହିଲେ ସେ କପଡାରେ ହାତସିଲାଇ ବଟୁଆ, ବ୍ୟାଗ ଇତ୍ୟାଦି ଆକର୍ଷଣୀୟ ଉପହାର ତିଆରି କରିପାରୁଥିଲେ ଓ ତା' ସହିତ କାଠକାମ କରିବାରେ ସେ ଏପରି ପଟୁତା ଅର୍ଜନ କରିଥିଲେ ଯେ, ବଢେଇମାନେ ମଧ୍ୟ ହାର ମାନୁଥିଲେ । ଥରେ ସେ ତାଙ୍କର ଏକ ଅନୁଭୂତି ବର୍ଣ୍ଣନା କରିବା ପରିପ୍ରେକ୍ଷୀରେ କହିଲେ, ଖଣ୍ଡପଡା ବନ୍ଧୁଘରକୁ ଯିବା ରାସ୍ତାରେ ଜଣେ ଯୁବ ବଢେଇ କାମ କରୁଥିବାର ଦୂରରୁ ଦେଖି ତାଙ୍କୁ ଡାଗିଦା କଲେ "ତୁ ବଢେଇ ପିଲାତ" ? ପିଲାଟି ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ଚାହିଁଲା । କିଛି ବୁଝିପାରିଲାନି । ଅପମାନ ପାଇ ତା ବାପାକୁ ଡାକିଲା। ତା'ର ବାପା ଆସି ଦେଖେ, ଜଣେ ବାଟୋଇ ତା'ର ପୁଅକୁ ଅପମାନସୂଚକ କଥା କହିଛନ୍ତି । କଥାକୁ ଗୁରୁତ୍ୱର ସହ ବିଚାର କରି ଜାଣିଲା, ପୁଅ ଯେଉଁ ହତିଆରରେ(ବଟାଳି)  କାମ କରୁଚି, ତା'ର ସଠିକ୍ ଉପଯୋଗ କରିନାହିଁ । ବାପ ପୁଅର ଭୁଲ୍ ବୁଝିପାରି, କ୍ରୋଧ ବଦଳରେ ତାଙ୍କ ଗୁଣକୁ ପ୍ରଶଂସା କଲା ଓ ପୁଅକୁ ତାଙ୍କ ପାଖରେ ତାଲିମ ନେବାକୁ ପଠାଇ

ଦେଲା । ସେ ପିଲା ଖଣ୍ଡପଡାରୁ ଆମ ଗାଁକୁ ଆସି ତାଙ୍କ ଘରେ ରହି କାଠକାମ ଶିକ୍ଷା ନେଲା ।

ଏକ ଘଟଣାଚକ୍ରରେ, ରଥ ମହାଶୟଙ୍କର କବିରାଜି ବୃତ୍ତି ଆରମ୍ଭ ହୋଇଥିଲା । ତାଙ୍କ ପଡୋଶୀ ଜୟକୃଷ୍ଣ ମିଶ୍ରଙ୍କ କନ୍ୟା ଫକିରି ଥରେ ଜ୍ୱରରେ ପୀଡିତ ହୋଇ କଷ୍ଟ ପାଇଲେ । ଜ୍ୱର କମିବାର ନାଁ ନେଲାନି । ଶରଣକୁଳରେ ଜଣେ କବିରାଜ ଥିଲେ । ତାଙ୍କୁ ଅନୁରୋଧ କରିବା ସତ୍ତ୍ୱେ, ସିଏ ଆସିଲେ ନାହିଁ । ଜଗନ୍ନାଥ ରଥ ଭାରି ବିଚଳିତ ହୋଇଗଲେ । ଗାଁରେ ଚିକିତ୍ସା ସୁବିଧା ନ ଥିବା କଥା ତାଙ୍କ ମନରେ ଉଦ୍‌ବେଳିତ ହେଲା । ହଠାତ୍ ମନରେ ସିଦ୍ଧାନ୍ତ ନେଲେ ଯେ ସେ କବିରାଜି ଶିକ୍ଷାକରି ଚିକିତ୍ସା ଆରମ୍ଭ କରିବେ । ସେଇ ମୁହୂର୍ତ୍ତରେ ଡାକଯୋଗେ କଲିକତାରୁ ମାଧବ କରଙ୍କ ଲିଖିତ "କବିରାଜ ନିଦାନ" ପୁସ୍ତକ ମଗାଇ ପଢିବା ଆରମ୍ଭ କଲେ । କିନ୍ତୁ ସେ ଭଲ ପଢି ପାରନ୍ତି ନାହିଁ । ତେଣୁ ରାମ ମାଷ୍ଟ୍ରଙ୍କୁ କହିଲେ, ତୁ ପଢ, ମୁଁ ଶୁଣିବି । ରାମ ମିଶ୍ର ଯେତିକି ପୃଷ୍ଠା ପଢିବେ, ପର ଦିନ ରଥ ମହାଶୟ ସ୍ମୃତିଚାରଣ କରିବା ପରେ ଆଗକୁ ପଢା ବଢାନ୍ତି । ଶୁଣି ଶୁଣି ରୋଗ ଓ ତା'ର ଚିକିତ୍ସା ପଦ୍ଧତି, ଔଷଧର ମୂଳ ଉପାଦାନ, ତିଆରି କରିବା ପ୍ରଣାଳୀ ଇତ୍ୟାଦି ସବୁ ମନେରଖିଦେଲେ । ରଥ ମହାଶୟଙ୍କର ତୀକ୍ଷ୍ଣ ସ୍ମରଣଶକ୍ତି ପ୍ରଶଂସାଯୋଗ୍ୟ । ଆରମ୍ଭ ହେଲା ଚିକିତ୍ସା । ଆଉ କେତେକ ଓଡିଆ ଓ ବଙ୍ଗଳା ବହି ମଗାଇ ପଢିଲେ । ତାଙ୍କ ମାମୁଁ ସାରଙ୍ଗଧରପୁରର ଲଡୁକେଶ୍ୱର ମହାପାତ୍ର, ଜଣେ କବିରାଜ । ତାଙ୍କଠାରୁ ମଧ୍ୟ ଶିକ୍ଷାଲାଭ କରି ଚିକିତ୍ସାରେ ପଟୁତା ଅର୍ଜନ କଲେ । ଖୁବ୍ କମ୍ ଦିନ ମଧ୍ୟରେ ତାଙ୍କ ସୁନାମ ନୟାଗଡରେ ପ୍ରଚାର ହୋଇଗଲା । ଥରେ ରାଜାଙ୍କ ଭଉଣୀ ଜ୍ୱରରେ ବହୁଦିନଧରି ପୀଡିତ ହୋଇ କଷ୍ଟ ପାଇଲେ । ରଥ ମହାଶୟଙ୍କ ନାମ ଶୁଣିବାପରେ ତାଙ୍କୁ ରାଜା ଡକାଇଲେ । ତାଙ୍କ ଚିକିତ୍ସାରେ ରୋଗୀ ଆଶୁ ଆରୋଗ୍ୟ ଲାଭ କରିବା ଫଳରେ ରାଜା ଅତ୍ୟଧିକ ପ୍ରୀତ ହୋଇ ତାଙ୍କୁ ଭେଷଜ ରତ୍ନ ରଥଶର୍ମା ଉପାଧିରେ ଭୂଷିତ କଲେ । ସେହି ଦିନରୁ ତାଙ୍କର ନାଁ ସର୍ବତ୍ର ଚର୍ଚ୍ଚା ହେଲା ଓ ପ୍ରଶଂସାର ସୁଅ ଛୁଟିଲା । ବହୁ ଦୁରାରୋଗ୍ୟ ରୋଗୀ ତାଙ୍କ ଚିକିତ୍ସାରେ ଉପକୃତ ହେଲେ । ତାଙ୍କ ଚିକିତ୍ସାର ବିଶେଷତ୍ୱ ଥିଲା, ବନ୍ଧ୍ୟା ରୋଗରୁ ମୁକ୍ତି, ସୁଖଦେ ପ୍ରସବ, ଧନୁଷ୍ଟଙ୍କାର ବ୍ୟାଧି ନିରାକରଣ, ଉତ୍ୟାଦି । ସେ ବିଶୁଦ୍ଧ ଛାଗଳାଦି ଘୃତ, କୁମାର କଳ୍ପଦ୍ରୁମ ଆଦି କେତେକ ସ୍ୱତନ୍ତ୍ର ଔଷଧ ତିଆରି କରିବାରେ ସିଦ୍ଧହସ୍ତ ଥିଲେ । ବନ୍ଧ୍ୟାତ୍ୱ ଦୂରିକରଣ

ଚିକିତ୍ସାରେ ତାଙ୍କଠାରୁ ଶୁଣିଥିବା ଏକ ଘଟଣା ଭାରି ମନେପଡେ । ସେ ଆଧୁନିକ ଚିକିତ୍ସା ଶାସ୍ତ୍ରର ବିଡମ୍ବନା କଥା ଉଲ୍ଲେଖ କରନ୍ତି । ନୟାଗଡ କଚେରୀ ସାମନାରେ ଜଳଖିଆ ଦୋକାନ ଦେଇଥାଏ ସୋଲପଟା ବାଂଛା ସାହୁ । ସେ ରଥ ମହାଶୟଙ୍କୁ ବହୁତ ସମ୍ମାନ ଦିଏ । ତା'ର ଭାଇ ଭୀମ ସାହୁର ସନ୍ତାନ ନ ହେବାରୁ ପରିବାରର ସମସ୍ତ ସଦସ୍ୟଙ୍କ ମନରେ ଦୁଃଖ ଥାଏ । ସେ ରଥ ମହାଶୟଙ୍କୁ ବଜାରରେ ଦେଖି ତା'ଭାଇକୁ କହିଲା ତୁ ଯାଇ ତାଙ୍କ ଗୋଡତଳେ ପଡ । ସେ ତୋର ଦୁଃଖ ହରଣ କରିବେ । ଭୀମ ଭାରି କ୍ରୋଧି ପ୍ରକୃତିର ଲୋକ । ତଥାପି ସେ ଯାଇ ରାସ୍ତା ଉପରେ ରଥଙ୍କ ଆଗରେ ଲମ୍ୱ ହୋଇ ପଡିଗଲା । ରଥ ମହାଶୟ ଘଟଣା କ'ଣ ଜାଣିପାରିଲେ ନାହିଁ । ତା ପରେ ବାଞ୍ଛା ସାହୁ କବିରାଜଙ୍କୁ ସେମାନଙ୍କ ଦୁଃଖ କଥା କହିଲା । ରଥ ମହାଶୟ ଆଶ୍ୱାସନା ଦେଇ ଚିକିତ୍ସା ଆରମ୍ଭ କଲେ ଓ ଭୀମର ସ୍ତ୍ରୀ ଗର୍ଭ ଧାରଣ କଲେ । ସେ ପରିବାରର ଖୁସି କହିଲେ ନସରେ । ତା'ପରେ ସହଜ ଓ ସୁଖ ପ୍ରସବ ପାଇଁ ମଧ୍ୟ ଔଷଧ ଦେଲେ । ପ୍ରସବ ଦିନ ଓ ସମୟ ଆକଳନ କରି କହିଲେ, ସେ ଦିନ ନୟାଗଡ ଡାକ୍ତରଖାନାକୁ ନେଇଯିବୁ । ଭୀମା ଦିନ ଗଣିଚାଲିଲା । ନିର୍ଦ୍ଧାରିତ ଦିନ ଯଦିଓ ପ୍ରସବ ସୂଚନା ନଥିଲା, ତଥାପି କବିରାଙ୍କ ପ୍ରତି ଅତୁଟ ବିଶ୍ୱାସ ଥିବାରୁ ସ୍ତ୍ରୀକୁ ଡାକ୍ତରଖାନାରେ ଭର୍ତ୍ତି କରିଦେଲା । ଡାକ୍ତର କିନ୍ତୁ କହିଲେ ଏବେ ପ୍ରସବ ସମ୍ଭାବନା ନାହିଁ, ଆଉ ଅନ୍ତତଃ ପନ୍ଦର ଦିନ ଯିବ । କିନ୍ତୁ ଭୀମାକୁ ବୁଝାଇବା ସମ୍ଭବ ନୁହେଁ । ରାତି ପ୍ରାୟ ଏଗାରଟା ସମୟ । ତା'ର ସ୍ତ୍ରୀ ପରିସ୍ରା କରିବାକୁ ପଡିଆକୁ ଯାଇ ସେଠାରେ ପୁତ୍ର ସନ୍ତାନ ପ୍ରସବ କରିଦେଲେ । ଭୀମା ବହୁତ ଖୁସି ହେଲା ସତ କିନ୍ତୁ ମା' ଓ ନବଜାତ ଶିଶୁଙ୍କ ପ୍ରତି ତା'ର କର୍ତ୍ତବ୍ୟ କଥା ବିଚାରକୁ ନ ନେଇ, ସିଧା ଡାକ୍ତରଙ୍କ ଘରେ ହାଜର । ରାତି ସମୟ । ତା'ର ପାଟି ଶୁଣି ଡାକ୍ତର ବାହାରକୁ ଆସି ଭୀମା କ୍ରୋଧର ଶିକାର ହେଲେ । "ତମେ ଡାକ୍ତର ! କି ପାଠ ପଢିଚ, ଆମ କବିରାଜଙ୍କ କଥା କେବେ ମିଛ ହେବ ? ଆସ ଦେଖିବ, ମୋର ପୁଅ ହେଇଚି ।

ରଥ କବିରାଜଙ୍କ ଚିକିତ୍ସାର ଏପରି ଅନେକ ଦୃଷ୍ଟାନ୍ତ ଅଛି । ସେ ଥିଲେ ଜଣେ ବିଜ୍ଞ ଚିକିତ୍ସକ । ତାଙ୍କ ଘରେ ସଦାବେଳେ କିଛି ଲୋକ ଥାଆନ୍ତି, କିଏ ଜଙ୍ଗଲରୁ ଔଷଧ ପାଇଁ କଞ୍ଚାମାଲ ସଂଗ୍ରହ କରିବ ତ ଆଉ କିଏ ବଟିକା କିମ୍ୱା ରସ ତିଆରିରେ ସାହାଯ୍ୟ କରିବ । ମୋର ନନା ଓ ଜୟ ମିଶ୍ରେ ଔଷଧ ତିଆରି

କରିବାରେ ବେଳେ ବେଳେ ଯାଇ ସାହାଯ୍ୟ କରନ୍ତି ଓ କବିରାଜ ମଧ୍ୟ ମାଗଣାରେ ସେମାନଙ୍କୁ ବଟିକା ଦିଅନ୍ତି । ଆମ ଗାଁ ପଞ୍ଚୁ ବାରିକ ରଥଙ୍କର ମୁଖ୍ୟ କାରପଟଦାର ।

ରଥ ମହାଶୟଙ୍କ ଠାରୁ ଗାଁର ଐତିହ୍ୟ ସହ ଅନ୍ୟ କେତେକ ରୋଚକ ଘଟଣା ଶୁଣିବାକୁ ଆଗ୍ରହ ଲାଗେ । ତାଙ୍କର ସବୁ କାମ ଧିର ମନ୍ଥର । ତାଙ୍କ ଖାଇବା ବି ବହୁତ ଡେରି । ଶୁଣାଯାଏ, ସେ ଖାଇବାକୁ ବସିବା ପରେ ବି ଜଣେ ଯଦି ନାଗଝର ନଦୀକୁ ଯାଇ ମାଛ ଧରି ଆସିବ, ସେ ମାଛ ରନ୍ଧାହୋଇ ତାଙ୍କୁ ପରଷା ହେଇପାରିବ । ସିଏ ଖଣ୍ଡେ ସପ୍ ଧରି ଦାଣ୍ଡକୁ ଆସିବେ ଓ ଖରା ପୋଇଁବାପାଇଁ ଜଗନ୍ନାଥ ମିଶ୍ରଙ୍କ ଦାଣ୍ଡ ବାରଣ୍ଡାରେ ବିଛାଇ ଶୋଇବେ । ପିଲା ମାନଙ୍କୁ ଗୋଡ ମୋଡିବା ପାଇଁ କହିବେ ଓ ତାଙ୍କର ମିଷ୍ଟାଳାପରେ ମୁଗ୍ଧହୋଇ ବିନା ସଙ୍କୋଚରେ ପିଲାମାନେ ତାଙ୍କ ସେବା କରିଥାନ୍ତି । ତାଙ୍କ ଗପ ଭିତରେ ନୟାଗଡ ରାଜାଘର କଥା, ବଡକୁଟୁଣୀ ଗନ୍ଧିଆ ନାହାକର କୁହୁକ ବିଦ୍ୟା ଇତ୍ୟାଦି ଇତ୍ୟାଦି ଥାଏ । ତାଙ୍କ ପାଇଁ କବିତାଟିଏ -

## ରଥ କବିରାଜ

ସଭିଙ୍କର ହିତ      ଚାହୁଁଥିଲେ ସେ ତ<br>
    ତେଣୁ ନାମ ଜଗନ୍ନାଥ ।<br>
ସଠିକ୍ ନିଦାନ      କରୁଥିଲେ ବୋଲି<br>
    ତାଙ୍କ ନାମ ହେଲା ଖ୍ୟାତ ।।

ରାତି ନପାହୁଣୁ      ଦାଣ୍ଡଦୁଆରରେ<br>
    ଜମିଯାନ୍ତି ଲୋକ କେତେ ।<br>
ଜର କାଶ ଛିଙ୍କ      ଅବା ଯେତେ ରୋଗୀ<br>
    ଡାକନ୍ତି ସର୍ବେ ଆରତେ ।।

ନଥାଏ ବିରକ୍ତି      ନିର୍ବିକାର ମନେ<br>
    ସଭିଙ୍କ କଥା ବୁଝନ୍ତି ।<br>
ଲକ୍ଷଣକୁ ଦେଖି      ନାଡି ଚିପିଦେଇ<br>
    ରୋଗ ନିଦାନ କରନ୍ତି ।।

ମଧୁର ବଚନ କେତେ ଆଶ୍ୱାସନା
ମୁଣ୍ଡ ଆଉଁସି ଦିଅନ୍ତି।
ମାଗଣା ଚିକିତ୍ସା ମାଗଣା ଔଷଧ
ଗରିବ ପଥି ପାଆନ୍ତି॥

ଅଗାଧ ବିଶ୍ୱାସ ଆଶୁ ଆରୋଗ୍ୟର
ରୋଗୀ ଆଶ୍ୱାସନା ପାଇ।
ସ୍ୱଳ୍ପ ବିଶ୍ରାମରେ ଆରୋଗ୍ୟ ଲଭନ୍ତି
ପାନେ ଦୁଇପାନ ଖାଇ॥

ନାହିଁ ଅହଙ୍କାର ନାହିଁ ଅଭିମାନ
ନଥିଲା ଲୋଭ ଧନରେ।
ସମସ୍ତଙ୍କୁ ସେବା ପ୍ରଦାନ କରନ୍ତି
ଭେଦ ନଥାଏ ମନରେ॥

କୁହନ୍ତି ସେ ଯଦି ବିଶ୍ୱାସ ନଥାଇ
ରୋଗୀ ଖାଇବ ଔଷଧ।
ବୈଦ୍ୟ ଯେତେ ଭଲ ହେଲେ ବି ରୋଗୀର
ବଢ଼ିବ ସିନା ବିପଦ॥

ମନେ ପଡ଼ିଯାଏ ସେଦିନ ଘଟଣା
ରୋଗୀ ସହ କଥା ହେଲେ।
ପରଖିଲେ ତାକୁ ରୋଗ ଚିହ୍ନିସାରି
ଔଷଧ ଦିପାନ ଦେଲେ॥ .

ଆଶ୍ୱାସନା ଦେଲେ ସୁସ୍ଥ ହେବ ଶିଘ୍ର
ଖାଇଲେ ଏ ଦୁଇପାନ।
ରୋଗୀ ପଚାରିଲା ଆସିବି ମୁଁ କେବେ
କୁହ ହେ ରଥ ଆପଣ॥

କ୍ରୋଧାନ୍ୱିତ ହୋଇ ବଇଦ କହିଲେ
ଫେରିଯା ରଖି ବଟିକା ।
ତୁମ ପରି ରୋଗୀ ନଆସନ୍ତୁ କେବେ
ଯା' ମନରେ ଅଛି ଦକା ॥

ଓଷଦ ମୁଁ ଦିଏ ଉପଶମ ପାଇଁ
ରୋଗ ବଢ଼ିବାକୁ ନୁହେଁ ।
ବିଶ୍ୱାସ ନଥାଇ ଓଷଦ ଖାଇଲେ
ରୋଗୀ ବାରମ୍ବାର ଧାଏଁ ॥

ମନର ବିଶ୍ୱାସ କର୍ମନିଷ୍ଠା ପାଇଁ
ଅସାଧ୍ୟ ସାଧନା କରି ।
ସ୍ମୃତି ପଟଳରେ ରହିଗଲେ ସିଏ
ସଭିଏଁ ହୁଅନ୍ତି ଝୁରି ॥

ଏତେ ଦୟାବନ୍ତ ମଣିଷଟି ସିଏ
ଝୁରୁଛନ୍ତି ଲୋକେ ଏବେ ।
ତାଙ୍କ ପରି ବୈଦ୍ୟ ଏ ଖଣ୍ଡମଣ୍ଡଳେ
ମିଳିବେନି ଆଉ କେବେ ॥

## ରାମଚନ୍ଦ୍ର ରଥ

ଂରାମଚନ୍ଦ୍ର ରଥ କବିରାଜ ଜଗନ୍ନାଥ ରଥଙ୍କର ଏକମାତ୍ର ପୁତ୍ର ହୋଇଥିବାରୁ ପିଲାଦିନରୁ ସେ ଅତି ସ୍ନେହ ଓ ଆଦରରେ ବଢ଼ିଥିଲେ । ସେ ତାଙ୍କ ଅଜାଘରେ ରହି ଖଣ୍ଡପଡା ବିଦ୍ୟାଳୟରେ ସପ୍ତମ ପର୍ଯ୍ୟନ୍ତ ପାଠ ପଢ଼ିଥିଲେ । ମିଷ୍ଟଭାଷୀ, ପରହିତ ଚିନ୍ତା ଓ ଖୁସି ମିଜାସରେ ସେ ତାଙ୍କ ଜୀବନ ଅତିବାହିତ କରି ଗଲେ । ଯଦିଓ ପିତାଙ୍କ କବିରାଜ ବୃତ୍ତିକୁ ଆପଣେଇ ଲୋକଙ୍କ ସେବାରେ ସମୟ ନିୟୋଜିତ କଲେ, କିନ୍ତୁ ସଫଳ ହେଲେନାହିଁ । କାରଣ ଯାହା ହେଉନା କାହିଁକି, ସମୟ ବଦଳିବା ସହିତ ଆଧୁନିକ ଚିକିତ୍ସା ପ୍ରତି ଲୋକମାନଙ୍କର ଆଗ୍ରହ ଧିରେ ଧିରେ

ବଢିବାରୁ କବିରାଜି ଚିକିତ୍ସାର ଆଗ୍ରହ କମିବାରେ ଲାଗିଲା ।

ଆମ ଗାଁରେ ସେ ପ୍ରଥମେ ସାଇକେଲ କିଣିଥିଲେ ଓ ସାଇକେଲ ଚଲାଇବାରେ ତାଙ୍କର ଏତେ ଆଗ୍ରହ ଥିଲାଯେ, ସେ ବ୍ରହ୍ମପୁର, କଟକ ଆଦି ବହୁ ସ୍ଥାନ ସାଇକେଲରେ ଭ୍ରମଣ କରିଥିଲେ । ମଫସଲ ଗାଁରେ ସାଇକେଲ ଖରାପ ହେଲେ ସଜାଡିବା ଅସୁବିଧା । ତେଣୁ ସବୁ ସରଞ୍ଜାମ ରଖି ନିଜ ସାଇକେଲ ସଜାଡିବା ସହ ଗାଁକୁ ଆସିଥିବା ଯେ କେହି ବ୍ୟକ୍ତିଙ୍କ ସାଇକେଲ ଖରାପ ହେଲେ ସେ ବିନା ସଙ୍କୋଚରେ ପଚାରିବା ପୂର୍ବରୁ ସଜାଡିବା ପାଇଁ ଅଗଭର ହୋଇଥାନ୍ତି । ତା' ପାଇଁ ସେ ଘରେ ଓ ବାହାରେ ବେଳେ ବେଳେ ଅପଦସ୍ତ ହୋଇଥିଲେ । ଏଇ ପରିପ୍ରେକ୍ଷୀରେ ଏକ ସମ୍ବେଦନଶୀଳ ଘଟଣା ମନେପଡେ । ଜନୈକ ଫେରିବାଲା ଗାଁକୁ ସାଇକେଲରେ ଆସିଥିଲା । ତା'ର ସାଇକେଲ ଚକା କଣା ହୋଇଯିବାରୁ କ'ଣ କରିବ ତା'ର ବୁଦ୍ଧି ହଜିଗଲା ? ତା'ର ବ୍ୟସ୍ତତା ଦେଖି ରାମ ରଥେ ସମ୍ଭାଳି ରହି ପାରିଲେ ନାହିଁ । ଘରେ କିନ୍ତୁ ନିଜ ସ୍ତ୍ରୀ ଶେଷ ନିଶ୍ୱାସ ତ୍ୟାଗ କରିବା ଅବସ୍ଥାରେ ମୃତ୍ୟୁସହ ଲଢେଇ କରୁଛନ୍ତି । ତଥାପି ସେ ଲୋକକୁ ସାହାଯ୍ୟ କରି ତାକୁ ଆଶ୍ୱସ୍ତି ଦେଲେ । ପରିବାର ଲୋକେ ତାଙ୍କର ଏତାଦୃଶ୍ୟ କାର୍ଯ୍ୟ ଦେଖି କ'ଣ କହିବେ ଭାବିପାରିଲେ ନାହିଁ । ସେହି ଅବସ୍ଥାରେ ତାଙ୍କ ସ୍ତ୍ରୀ ଚାଲିଗଲେ ।

ଆମ ଗାଁ ପଶ୍ଚିମ ଦିଗ ଶଂଖ ତିଆରି ହୋଇ ନଥିଲା । ନାଳ ଉପରେ ଦୁଇଟି ତାଳଦଣ୍ଡା ରଖି ଲୋକ ଯାତାୟତ କରୁଥିଲେ । ରାମରଥେ ସାଇକେଲରେ ବସି ତା'ଉପରେ ଚଲାଇ ଆସିବା ଦୃଶ୍ୟ ଗାଁର ଲୋକମାନେ ଉପଭୋଗ କରନ୍ତି । ଥରେ ଥଟ୍ଟା ମଜାରେ କେହି ଜଣେ ତାଙ୍କ ଲକ୍ଷ୍ୟ ଭ୍ରଷ୍ଟ କରିଦେବାରୁ ସେ ସାଇକେଲ ସହ ନାଳରେ ପଡିଗଲେ ଓ ତାଙ୍କର ଗୋଟିଏ ହାତ ଭାଙ୍ଗିଗଲା । ନିଜେ ଉଠି ଭଙ୍ଗା ହାତକୁ ଟାଣି ସିଧା କରିଦେଲେ ଓ ସାଇକେଲ ଧରି ଘରକୁ ଆସିଲେ । ତାଙ୍କ ନନା ଭଙ୍ଗା ହାତକୁ ପରଖି ଦେଖିଲେ ଭଙ୍ଗା ହାତକୁ ପୁଅ ଠିକ୍ ଖାପରେ ପକେଇ ଦେଇଛି । ତେଣୁ ତାକୁ ସବାସୀ ଦେଲେ ।

ଆମ ଅଞ୍ଚଳରେ ଲୋକମାନଙ୍କର ଆର୍ଥିକ ଅବସ୍ଥା ବିଚାର କଲେ, ସମସ୍ତଙ୍କ ଘର ଝାଟି ମାଟିରେ ତିଆରି ଓ ଚାଳ ଛପର ଘର । ରଥ ମହାଶୟ ପ୍ରଥମ କୋଠାଘର ତିଆରି କଲେ । ସୁନ୍ଦର ଢଙ୍ଗରେ ଏକ ନୂତନ ଘର ତିଆରି କରାଯିବା

ପରେ ବି ସେ ସଦାବେଳେ ତା'ର ନକ୍ସା ବଦଳାଇବା ଓ ଭିନ୍ନ ଭିନ୍ନ ଢଙ୍ଗରେ ସଜାଇବା କାମରେ ଲାଗି ରହିଲେ ।

## ବାବନ ରଥ

ଜଗନ୍ନାଥ ରଥଙ୍କ ଦ୍ୱିତୀୟ ଭାଇ କାଶୀନାଥ ରଥ । ତାଙ୍କର ପୁଅ ନଥିଲେ । ଦୁଇଟି କନ୍ୟା । ପ୍ରଥମ କନ୍ୟା ଖଣ୍ଡପଡା ଓ ଦ୍ୱିତୀୟ କନ୍ୟା ନୟାଗଡ ନିକଟସ୍ଥ ଭାଟସାହିରେ ବିବାହ କରିଥିଲେ । ବଡର ଦୁଇ ପୁଅ, ବାବାନ ଓ ବୀରୂପାକ୍ଷ । କାଶିନାଥ ରଥ ନାତି ବାବନଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ । ବାବନ ରଥଙ୍କ ଜୀବନୀ ଯଦିଓ ସଂଘର୍ଷମୟ କିନ୍ତୁ ତାଙ୍କ ଚାଲିଚଳନ ଓ ଜୀବନ ବୃତ୍ତାନ୍ତ ପର୍ଯ୍ୟାଲୋଚନା କଲେ ବହୁ ରୋଚକ ତଥ୍ୟ ମିଳେ । ସରଳ ଓ ନିରାଡମ୍ବର ଜୀବନ । ଆର୍ଥିକ ଅବସ୍ଥା ବିଶେଷ ସ୍ୱଚ୍ଛଳ ନଥିଲା । ସେ ଜଣେ ମଜାଳିଆ ମଣିଷ ଓ ସମସ୍ତଙ୍କ ସହ ମିଶିପାରୁଥିଲେ । କିନ୍ତୁ ଯେତେବେଳେ ଭାବପ୍ରବଣ କିମ୍ବା ଗମ୍ଭିର ହୋଇଯାଉଥିଲେ, କେମିତି ଅଡୁଆ ଲାଗୁଥିଲେ । ତାଙ୍କର ତିନି ଝିଅ । ରଥଙ୍କର ଯଦିଓ ଶିକ୍ଷାଗତ ଯୋଗ୍ୟତା ବେଶି ନଥିଲା କିନ୍ତୁ ପୂଜା ପାଠ ପୁରାଣ ପଢା ଇତ୍ୟାଦି କରିବାରେ ଦକ୍ଷତା ଥିଲା । ଏକଥା ସତ ଯେ, ବ୍ରାହ୍ମଣ ଘରେ ଜନ୍ମ ନେଲେ ବାହ୍ୟ ସମ୍ମାନ ଯଦିଓ ମିଳେ, କିନ୍ତୁ ରୋଜଗାର ପନ୍ଥା ନଥିଲେ ତାହା ଅଭିଶାପ ବୋଲି ଜାଣ । କାରଣ ଚାକିରି ବାକିରି ନଥିଲେ, ଅନ୍ୟ ଧନ୍ଦା କିଛି କରିବା କଷ୍ଟ, ଚାଷ କାମ ତ ମୋଟେ ନୁହଁ । ବାବନ ରଥଙ୍କ କ୍ଷେତ୍ରରେ ବି ସେୟା । ମାଆଙ୍କୁ ମିଶାଇ ଛଅପ୍ରାଣୀ କୁଟୁମ୍ବର ଭରଣ ପୋଷଣ କରିବା କଷ୍ଟ ନିଶ୍ଚିତ । କ'ଣ ହେଲେ ତ ଧନ୍ଦା କରିବାକୁ ହେବ । ତେଣୁ ଯେଉଁ ଅଳ୍ପକିଛି ଜମି ଥିଲା, ହଳିଆ ଦ୍ୱାରା ଚାଷକାମ କରାଇ ନେଉଥିଲେ । ଖର୍ଚ୍ଚ ତୁଲାଇବା ପାଇଁ ଅନ୍ୟ ଯେଉଁସବୁ ଆନୁସଙ୍ଗିକ ବୃତ୍ତି ଆପଣେଇଲେ, ସେଥିରେ ସେ ସଫଳ ହୋଇପାରିଲେନାହିଁ । ସେ ଯେଉଁ ଜଳଖିଆ ଦୋକାନ ଖୋଲିଥିଲେ, ସେ କଥାଟା ବେଶି ମନେପଡେ । କଜଳାଇପଲ୍ଲୀ ପରି ମଫସଲ ଗାଆଁରେ ଜଳଖିଆଦୋକାନର ଚାହିଦା ସେବର ପରିସ୍ଥିତିକୁ ବିଚାର କଲେ, ଆଦୌ ଗ୍ରହଣୀୟ ନୁହେଁ । କାରଣ ଗରାଖ କିଏ ? ବଡହେଲେ ସ୍କୁଲ ପିଲା । କିନ୍ତୁ ସମସ୍ତଙ୍କ ଆର୍ଥିକ ପରିସ୍ଥିତି ପ୍ରାୟତଃ ଦୁର୍ବଳ । ଘର ଚଳାଇବା ତ କଷ୍ଟ, ବରା, କାକରା ମିଠା ଖାଇବାକୁ

ଇଚ୍ଛା ଥିଲେବି ପଇସା ଆସିବ କେଉଁଠୁ ? ତେବେ, ରଥ ମହାଶୟ ଜଳଖିଆ ଦୋକାନ ଖୋଲିବା ପରେ ଗାଁ ଗହଳ ଚହଳ ହେଲା, ଲକ୍ଷ୍ମଣ ମିଶ୍ରଙ୍କ ପରି ଆମଗାଁ ଓ କୁଟୁଣିର କିଛିଲୋକ ମୁଖ୍ୟ ଗରାଖ ହେଲେ ସତ କିନ୍ତୁ ବାକି ବଢିଚାଲିଲା । ଯେନତେନ ପ୍ରକାରେ ବେପାରକୁ ଚାଲୁ ରଖିବାକୁ ଚେଷ୍ଟାତ କଲେ, କିନ୍ତୁ ବଧିସାହି ସଦେଇ ଗୁଡିଆ ଓ ଅନ୍ୟ ଅଭିଜ୍ଞ, କୁଶଳୀ ବ୍ୟବସାୟୀଙ୍କ ଆଗରେ ହାର ମାନିଲେ । ପରିଶେଷରେ, ଆଉ ଅଧିକ କ୍ଷତି ସହିନପାରି ଦୋକାନ ବନ୍ଦ କରିବାକୁ ବାଧ୍ୟ ହେଲେ । କିଛି ଗୋଟିଏ ଆୟକରି ପନ୍ଥା ଚୟନ କରିନପାରି ନିରାଶ ମନରେ ହତୋତ୍ସାହ ହୋଇ ପଡିଥିବା ସମୟରେ ଭଗବାନ ସାହାହେଲେ । ତାଙ୍କ ଦଦେଇପୁଅ ଭାଇ ଶରତ ଯେକି ରାଉରକେଲାରେ ଚାକିରି କରୁଥିଲେ, ଆଶାର କିରଣ ସଂଚାର କଲେ । ତାଙ୍କୁ ରାଉରକେଲା ନେଇ କୌଣସି ଏକ କାମରେ ରଖିଦେଲେ । ସେ ରାଉଲକେଲାରେ, ଏପାଖେ ପିଲାମାନେ ଗାଁରେ । କିଛିଦିନ ପରେ ଅବଶ୍ୟ ସେ ପରିବାର ସହ ଆମ ଗାଁରୁ ରାଉରକେଲାକୁ ସବୁଦିନ ପାଇଁ ସ୍ଥାନାନ୍ତର ହୋଇଗଲେ । ସେ ଆଉ ପଛକୁ ଫେରି ଚାହିଁନାହାଁନ୍ତି । ଲମ୍ବାଦିନ ପ୍ରତିକ୍ଷାର ଅନ୍ତ ଘଟି ଦୁର୍ଦ୍ଦିନ ଦୂର ହେଲା । ସେ ରାଉରକେଲାର ସ୍ଥାୟୀ ବାସିନ୍ଦା ହୋଇଗଲେ, ଝିଅମାନେ ମଧ୍ୟ ରାଉରକେଲା ପରି ବଡ ସହରରେ ରହି ଉତ୍ତମ ଶିକ୍ଷାଲାଭ କଲେ ଓ ଭଲ ଚାକିରି ବି କଲେ । ଏବେ ସେ ପରିବାର ଖୁସି ଜୀବନ କଟାଉଛନ୍ତି । ବାବନ କକେଇ ଓ ଖୁଡି କେବଠାରୁ ଇହଧାମ ତ୍ୟାଗ କଲେଣି କିନ୍ତୁ ତାଙ୍କ ପୂର୍ବ ଦିନର କଥା ଓ କାର୍ଯ୍ୟକଳାପ ସବୁ ଆଖି ଆଗରେ ଭାସିଯାଉଚି । ସେ ଜଣେ ମେଳାପୀ ମଣିଷ ଓ ସମସ୍ତଙ୍କ ସହ ଉତ୍ତମ ସମ୍ପର୍କ ରଖିଥାନ୍ତି । ଗାଆଁର ଭୋଜିକାର୍ଯ୍ୟ, ପର୍ବ ପର୍ବାଣୀ, ଯାନିଯାତ୍ରା, ସବୁଥିରେ ସିଏ ଭାଗନିଅନ୍ତି ଓ ରନ୍ଧାବଢା କାର୍ଯ୍ୟରେ ବି ତାଙ୍କର ଦକ୍ଷତା ଥିଲା । ଅନ୍ୟ ଏକ ରୋଚକ ଘଟଣା ହେଲା ତାଙ୍କ ନଡିଆ ଗଛରୁ ନଡିଆ ଚୋରିକରି ମୁଢିନଡିଆ ପାଗର ଭରପୁର ମଜା କେବେ କେବେ ଆମେ ପିଲାମାନେ ନେଉଥିଲୁ ।

## ନରସିଂହ ମହାପାତ୍ର

ନରସିଂହମହାପାତ୍ରଙ୍କ ନନାଙ୍କ ନାମ ୰ଗୋଦାବରୀଶ ମହାପାତ୍ର । ସ୍ୱନାମଧ୍ୟେୟ ଗୋଦାବରୀଶ ମହାପାତ୍ରଙ୍କ କଳାକୃତି ରାଜ୍ୟବିଦିତ ଥିଲା । ତାଙ୍କ

କଳାର ଚର୍ଚ୍ଚା ଆଠଗଡ, ଧରାକୋଟ, ନୟାଗଡ ଆଦି ରାଜ୍ୟରେ ବ୍ୟାପିଥିଲା । ସେ ଗଛ ପରିବେଶଣ କରି ସୁନାମ ଅର୍ଜନ କରିପାରିଥିଲେ । ତେଣୁ ତାଙ୍କୁ ରାଜାମାନେ ଗଛସାଗର ଓ ଭାରତୀଭୂଷଣ ଉପାଧିମାନ ପ୍ରଦାନ କରିଥିଲେ । ଧରାକୋଟ ରାଜ୍ୟର ଦେବାନ୍ ତାଙ୍କ କଳାକୃତିରେ ଅତି ପ୍ରସନ୍ନ ହୋଇ ତାଙ୍କସହ ନିବିଡ ସମ୍ପର୍କ ରଖିଥିଲେ । ସେଇ ସମ୍ପର୍କ ଓ ଅନୁକମ୍ପା ଯୋଗୁଁ ନରସିଂହ ମହାପାତ୍ର (କକେଇ) ଧରାକୋଟରେ ତାଙ୍କ ଘରେ ରହି ଉଚ୍ଚ ଶିକ୍ଷାଲାଭ କରିପାରିଥିଲେ । ଦିବାନ ମଧ୍ୟ କକେଇଙ୍କ ପ୍ରତି ତାଙ୍କ ନିଭୃତକୋଣରୁ ସ୍ନେହ ଦେଇ ନିଜ କନ୍ୟାକୁ ବିବାହ ଦେବାପାଇଁ ମନରେ ଇଚ୍ଛା ରଖିଥିଲେ । କିନ୍ତୁ ତାଙ୍କ ପୁଅ ସହ କକେଇଙ୍କର ମତାନ୍ତର ହେବା ହେତୁ କକେଇ ଧରାକୋଟ ପରିତ୍ୟାଗ କରି ଚାଲିଆସିଲେ ।

## ବାସୁଦେବ ମିଶ୍ର

୰ବାସୁଦେବ ମିଶ୍ର ମୋର କକେଇ । ସେ ବାଣପୁର ଅଚ୍ୟୁତରାଜପୁର ପୋଷ୍ୟ ହୋଇଯିବାରୁ ମିଶ୍ର ହୋଇଗଲେ । ବିଧି ଦୃଷ୍ଟିରୁ ପୁଅ ହୋଇଯାଇଥିଲେ ମଧ୍ୟ ସେ ନିଜ ଜନ୍ମମାଟି ଛାଡି ନ ଥିଲେ । ଆମ ଗାଁର ସମସ୍ତଙ୍କ ମଧ୍ୟରେ ସେ ହିଁ ଉଚ୍ଚ ଶିକ୍ଷିତ ଥିଲେ । ପୁରୀ କଲେଜରୁ ବିଏ ବିଏଲ୍ ପାସ୍‌କରିବା ପରେ ଓଡିଶା ସରକାରଙ୍କ ପ୍ରଶାସନିକ ଅଧିକାରୀ ରୂପେ ଯୋଗ ଦେଇଥିଲେ । ହୀରାକୁଦ ବନ୍ଧ ନିର୍ମାଣକାର୍ଯ୍ୟ ଚାଲିଥିବା ସମୟରେ କକେଇ ସେଠାରେ ପ୍ରଶାସନିକ ଅଧିକାରୀ ରୂପେ ଯୋଗଦେଇ କିଛିମାସ ପରେ ହରଭଙ୍ଗାମଣ୍ଡଳ/ ଗୋଷ୍ଠିଉନ୍ନୟନ ଅଧିକାରୀ ରୂପେ ଯୋଗ ଦେଲେ । ସେ ତାଙ୍କ ଚାକିରୀ କାଳରେ ଅନେକ ଉଚ୍ଚ ପଦ ପଦବୀରେ ନିଷ୍ଠାରସହ କାର୍ଯ୍ୟତୁଲାଇ ଅବସର ପୂର୍ବରୁ ଫୁଲବାଣୀ ଜିଲ୍ଲାର ଜିଲ୍ଲାଉନ୍ନୟନ ଅଧିକାରୀ ରୂପେ ଅବସ୍ଥାପିତ ଥିଲେ । ସରଳ ଓ ନିରାଡମ୍ବର ଜୀବନଯାପନ କରିବାର ଗୁଣ ତାଙ୍କ ଠାରୁ ହିଁ ଶିକ୍ଷା ମିଳିଥିଲା । ସରକାରଙ୍କ ଏକ ଉଚ୍ଚପଦାଧିକାରୀ ହୋଇ ମଧ୍ୟ ଓ ଆଜିର ଚାକଚକ୍ୟ ଚଳଣୀ ପ୍ରତି ସେ ଆକର୍ଷିତ ନ ହୋଇ ଅବସରକାଳୀନ ଜୀବନ ଖୁସିରେ ନିଜ ଗାଁରେ ହିଁ ବିତାଇ ଥିଲେ । ଗାଁର ସେଇ ପୁରୁଣା ଢଙ୍ଗର ଘର ପ୍ରତି ତାଙ୍କର ଖୁବ୍ ଆକର୍ଷଣ ଥିଲା । ସେ ସହର କିମ୍ବା ଅନ୍ୟ କୌଣସି ଜାଗାରେ ଘର କରିନଥିଲେ । ତାଙ୍କରି ଆଦର୍ଶରେ ତାଙ୍କ ଦୁଇ ପୁଅ ଓ ଝିଅ ମଧ୍ୟ ଅନୁପ୍ରାଣିତ । ବଡପୁଅ ଫର୍ମାସ୍ୟୁଟିକାଲ କମ୍ପାନୀରେ ଉଚ୍ଚ

ପଦବୀରେ କାର୍ଯ୍ୟକରି ଏଇ କିଛିଦିନ ହେଲା କାର୍ଯ୍ୟରୁ ଅବ୍ୟାହତି ନେଇ ଭୁବନେଶ୍ୱରରେ ପରିବାରସହ ରହୁଅଛି ।

## ଅନାମ ଚନ୍ଦ୍ର ମହାପାତ୍ର

୰ନାରାୟଣ ମହାପାତ୍ରଙ୍କ ଦୁଇ ପୁଅ ଓ ଦୁଇ ଝିଅ । ନାରାୟଣ ମହାପାତ୍ରଙ୍କର ଅକାଳ ମୃତ୍ୟୁ ପରିବାର ପ୍ରତି ଏକ ଶକ୍ତ ଧକ୍କା ଦେଇଥିଲା । କାରଣ ତାଙ୍କ ମୃତ୍ୟୁବେଳକୁ ଯଦିଓ ବଡ ଝିଅ ହାରର ବିବାହ ସମ୍ପନ୍ନ ହେଇଥିଲା, ଅନ୍ୟ ତିନିଜଣ ନାବାଳକ ଥିଲେ, ରୋଜଗାରର ପନ୍ଥା କିଛି ନଥିଲା । ଜମିବାଡି ଯାହାବି ଥିଲା, ତାହା ସାନକୁଟୁଣି ନିକଟସ୍ଥ ପାହାଡତଳେ । ଜଳସେଚନର ସୁବିଧା ନ ଥିବାରୁ ଯେଉଁ ବର୍ଷ ସମୟରେ ବର୍ଷା ହୁଏ, ଧାନ କିଛି ଅମଳ ହୁଏ । ସେ ସମୟରେ ଜଙ୍ଗଲ ଜନ୍ତୁ ବିଶେଷକରି ବାର୍‌ହା ମାନଙ୍କର ଦୌରାତ୍ମ୍ୟରୁ ଫସଲକୁ ରକ୍ଷା କରିବାକୁ ଦିନରାତି ଜଗିବାକୁ ପଡେ । ଜମି ଅମଳରୁ ଯାହାକିଛି ବି ମିଳେ, ବର୍ଷସାରା ଚଳିବା କଷ୍ଟ ହୁଏ । ଏପରି ଆର୍ଥିକ ଅନାଟନ ପରିସ୍ଥିତିକୁ ନେଇ ନନାଙ୍କ ମୃତ୍ୟୁପରେ ସେ ପରିବାର ଚଳିବା କଷ୍ଟହେଲା । ତେଣୁ ଅନାମ ଭାଇନା ଆଉ ପାଠ ପଢିବେ କଣ ପରିବାର ବୋଝ ମୁଣ୍ଡେଇଲେ । ସେ ସେତେବେଳେ କରଡାରେ ରହି ଶରଣକୁଳ ଉଚ୍ଚ ଇଂରାଜି ବିଦ୍ୟାଳୟ ଏକାଦଶ ଶ୍ରେଣୀରେ ପାଠ ପଢୁଥିଲେ । ତାଙ୍କ ପାଠ ପଢାରେ ସେଇଠି ଡୋର ବନ୍ଧାହେଲା । କିନ୍ତୁ କରିବେ କ'ଣ ? ଏପରି ଜଣେ କୋମଳମତୀ ବାଳକ ପରିବାର ଭରଣ ପୋଷଣ ପାଇଁକି ଧନ୍ଦା କରିପାରିବ ? ପରିସ୍ଥିତିର ଗମ୍ଭିରତାକୁ ଉପଲବ୍ଧି କରି ସେ ଗଭୀର ଆତ୍ମବିଶ୍ୱାସ ସହ ଅଦମ୍ୟ ସାହାସ ଜୁଟାଇ ସ୍ଥିର କଲେ ଯେ ନିଜକୁ ଆତ୍ମନିର୍ଭରଶୀଳ କରିବାକୁ ହେଲେ ଚାଷକାମକୁ ହିଁ ଆଦରି ନେବାକୁ ହେବ । ବ୍ରାହ୍ମଣ ଜାତି, ନିଜେ ଜମିରେ ହଳ କରିପାରିବେ ନାହିଁ, ହଳିଆ ମୂଲିଆଙ୍କୁ ନେଇ କାମକରିବାକୁ ହେଲେ ଅଧିକ ଖର୍ଚ୍ଚ ହେବ । ତେଣୁ ଚାଷସହ ଆନୁସଙ୍ଗିକ ଧନ୍ଦା କରି ଦୁଇ ପଇସା କମାଇବାକୁ ହେବ । ସେଥିପାଇଁ ସିଏ ଧନୀ ଓ ଖଲିଆ ଭାଇନାଙ୍କ ପ୍ରେରଣାରେ ସେମାନଙ୍କ ପଦାନୁସରଣ କଲେ । ମଜଭୁତ ପୋଢୁଅ ହଳେ କିଣି କାଠ ବ୍ୟବସାୟ ଶଗଡ଼ ଭଡ଼ା ଇତ୍ୟାଦି କାମରେ ଲାଗିଗଲେ । ଯୁବକ ସମୟ, ବନ ବିଭାଗରେ କାମ କରୁଥିବା କୁପ କଂଟ୍ରାକ୍ଟର ମାନଙ୍କର କାଠପରିବହନ କଲେ । ଭାରି ପରିଶ୍ରମୀ ଓ

ସାହସୀ ମଧ୍ୟ । କାମର ବୋଝ ସାଙ୍ଗକୁ କର୍ତ୍ତବ୍ୟର ତାଡନାରେ ସେ ଦିନରାତି ଏକକରି ଦେଉଥିଲେ । କୌଣସି କାମକୁ ସେ ନ୍ୟୁନ ଦୃଷ୍ଟିରେ ନଦେଖି କରିଯାଉଥିଲେ । କର୍ତ୍ତବ୍ୟନିଷ୍ଠ ସହ ଅନ୍ୟ ପ୍ରତି ସ୍ନେହ ଓ ଉଦାରତା ଗୁଣ ଯୋଗୁଁ ସେ କମ୍ ଦିନରେ ସମସ୍ତଙ୍କର ପ୍ରିୟପାତ୍ର ହୋଇପାରିଲେ । ଧନୀ, ଖଲିଆଭାଇନା ଓ ଅନାମ ଭାଇନା ତିନିଜଣ ଘନିଷ୍ଠ ସାଙ୍ଗ ହୋଇଗଲେ । ଗାଁର ହେଉ, ବନବିଭାଗର ହେଉ କିମ୍ୱା ସରକାରୀସ୍ତରରେ ଯେଉଁସବୁ କାମ ହେଲା, ସେଇ ତିନିଜଣ ମିଶି ସୂଚାରୁରୂପେ ସମ୍ପନ୍ନ କଲେ । ଅନାମ ଭାଇନାଙ୍କର ଯେଉଁ ଅନ୍ତର୍ନିହିତ ଗୁଣ ଥିଲା. ଗାଁରେ ରହି ତା'ର ପରିସ୍ଫୁଟନ ହେବା ସମ୍ଭାବନା ମଉଳିଗଲା । ସୃଜନଶୀଳ ଗୁଣଧାରୀ ବ୍ୟକ୍ତି ପ୍ରତି ଈଶ୍ୱର ସଦା ସଦୟ ଥାଆନ୍ତି । କିନ୍ତୁ ସମୟ ଅପେକ୍ଷା କରିଥାଏ । ମଣିଷ ଚାହିଁଲେ କିଛି କରିପାରେନା । ଅନାମଭାଇନାଙ୍କ କ୍ଷେତ୍ରରେ ତାହା ହିଁ ହେଲା । ଆଉ ବେଶିଦିନ କଷ୍ଟ କରିବାକୁ ପଡିଲା ନାହିଁ । ଭାଗ୍ୟହିଁ ବଳବାନ । ବୋଲଗଡ ନିକଟସ୍ଥ ଦିଘିରି ଗ୍ରାମର ଜନୈକ ପଟ୍ଟନାୟକଙ୍କ ସଂସ୍ପର୍ଶରେ ଆସି ତାଙ୍କର ମୃତ୍ତିକା ସଂରକ୍ଷଣ ବିଭାଗରେ ଫିଲ୍ଡମ୍ୟାନ ଚାକିରି ହୋଇଗଲା । ଭୁବନେଶ୍ୱରରେ ପୋଷ୍ଟିଙ୍ଗ ମିଳିଲା । ଘରେ ସମସ୍ତେ ଖୁସିହେଲେ । ପାଠପଢା ସିନା ଅଧିକ ହେଇପାରିଲା ନାହିଁ, ସରକାରୀ ଚାକିରି ହେବାପରେ ଆର୍ଥିକ ଅବସ୍ଥା ସହ ଭବିଷ୍ୟତ କର୍ମପନ୍ଥାରେ ଅନେକ ପରିବର୍ତ୍ତନର ଆଶା ରଖି ସେ କାର୍ଯ୍ୟରେ ଯୋଗଦେଲେ । ଅଳ୍ପ କେତେଦିନ ପରେ ତାଙ୍କର ସୁଦୂର କଳାହାଣ୍ଡି ଜିଲ୍ଲା ଭବାନୀପାଟଣାକୁ ବଦଳି ହୋଇଗଲା ।

ଅନାମ ଭାଇନା କିନ୍ତୁ ଗାଁରେ ରହି ନିଜକୁ ଗାଁ ପରିବେଶ ଓ ନିଜ କାମରେ ଖାପ ଖୁଆଇଦେବା ସହ ଧନୀ ଓ ଖଲିଆଭାଇନାଙ୍କ ସହ ନିବିଡ ବନ୍ଧୁତା, ନିଜ ହଳ ଶଗଡ଼ ଓ ଅନ୍ୟାନ୍ୟ ଅସବାବପତ୍ର ସହ ଏତେ ମାତ୍ରାରେ ଜଡିତ ହୋଇଯାଇଥିଲେ ଯେ ସେ ଭାବ ଓ ଆବେଗ ତାଙ୍କ ଚାକିରିରେ ଯୋଗ ଦେବାର ଅବ୍ୟବହିତ ପୂର୍ବରୁ ବାରି ହେଉଥିଲା ।

ଭାଇନା ଚାକିରିରେ ଯୋଗ ଦେବାପରେ ଆଉ ପଛକୁ ଫେରି ଚାହିଁ ନାହାଁନ୍ତି । ଉନ୍ନତି ହିଁ ଉନ୍ନତି । କାର୍ଯ୍ୟଦକ୍ଷତା, ମିଷ୍ଟଭାଷା, ସକାରାତ୍ମକ ଭାବ ନେଇ ସେ ତାଙ୍କ ବିଭାଗରେ ଇତିହାସ ରଚିଗଲେ । ଶିକ୍ଷାଗତ ଯୋଗ୍ୟତା ଅଧିକ ନଥାଇ ମଧ୍ୟ ତାଙ୍କୁ ଠିକ୍ ସମୟରେ ପଦୋନ୍ନତି ଦିଆଗଲା । ତାଙ୍କର ବିଶେଷ ଗୁଣ ହେଲା କୌଣସି

କାମକୁ ସେ ନାଁ କହିବା ନାହିଁ କିମ୍ବା ପଛଘୁଞ୍ଚା ଦେବେନାହିଁ ସେଥିପାଇଁ ସେ ସମସ୍ତ ବିଭାଗୀୟ ଅଧିକାରୀଙ୍କ ପ୍ରିୟପାତ୍ର ହୋଇ ସମ୍ମାନର ସହ ଚାକିରିରୁ ଅବସର ନେଲେ । ଅବସର ପର ଜୀବନ ଗାଁରେ ରହି ବହୁ ଉନ୍ନତିମୂଳକ କାମ କରିଗଲେ । ଜନ ସମ୍ପର୍କ କ'ଣ ତାଙ୍କଠାରୁ ହିଁ ଶିଖିବା ଉଚିତ୍ ? ସମସ୍ତଙ୍କୁ ଏକ ଡୋରିରେ ବାନ୍ଧି ରଖିବାର ଗୁଣ ତାଙ୍କ ପାଖରେ ହିଁ ଥିଲା । ତାଙ୍କର ଅକାଳ ବିୟୋଗରେ ସମସ୍ତ ଗ୍ରାମବାସୀ ମର୍ମାହତ ହେଲେ ଓ ଗାଁର ଅପୂରଣୀୟ କ୍ଷତି ଘଟିଲା ।

ଭାଇନାଙ୍କ ସହ ମୋର ସମ୍ପର୍କ ବିଷୟରେ କିଛି ଲେଖିବା ମୁଁ ସମୀଚିନ ମନେକରୁନି । ବଡଭାଇ ପ୍ରତି କୃତଜ୍ଞତା ଜ୍ଞାପନ କରିବା ବ୍ୟତୀତ ମୁଁ କ'ଣ କରିପାରେ ? ଯୌଥ ପରିବାରର ସଦସ୍ୟ ଆମେ ସତ, କିନ୍ତୁ ସମୟକ୍ରମେ ପରିବାର ସଦସ୍ୟ ବଢିଯିବା ପରେ ସାମାଜିକ ରୀତି ଅନୁଯାୟୀ ଅଲଗା ଘର ଓ ଅଲଗା ରୋଷେଇ ହେବା ସ୍ୱାଭାବିକ । ମନ ତ ସର୍ବଦା ଏକ । ଦଦେଇ ଚାଲିଯିବା ବେଳକୁ ମୁଁ ବହୁତ ଛୋଟ ଥିଲି । ଭାଇନା ଚାକିରି କଲେ ବହୁ ଦୂରରେ । ସେ ସମୟରେ ଆଜି କାଲି ଭଳି ଫୋନ୍ କିମ୍ବା ଯୋଗାଯୋଗ ସୁବିଧା ନଥିଲା, ତେଣୁ ସମ୍ପର୍କ ରଖିବା କଷ୍ଟ ହେଉଥିଲା । ମୁଁ କୃଷି କଲେଜରେ ପଢିବା ବେଳକୁ ସେ ସୁଦୂର କଳାହାଣ୍ଡିରୁ ଭୁବନେଶ୍ୱର ବଦଳି ହେଇ ଆସିଲେ । ତା'ପରଠୁ ସମ୍ପର୍କ ନିବିଡ ହେଲା । ସେ ସ୍ନେହୀ ପୁଣି ଭାଉଜ ତାଙ୍କଠୁ ବଳି । ମଉଜ ମଜଲିସ ଭୋଜିଭାତ ବହୁତ ହୁଏ । ତାଙ୍କ ଘରେ ମୋର ସ୍ୱତନ୍ତ୍ର ସ୍ଥାନ । କଲେଜରେ ସ୍ନାତକ ସରିବାପରେ ସ୍ନାତକୋତ୍ତର ପଢା ପାଇଁ ଅର୍ଥ ବାଧକ ହେଲା, କିନ୍ତୁ ଭାଇନାଙ୍କ ଆଶ୍ୱାସନା ମୋତେ ପଢିବାରେ ସାହାଯ୍ୟ କଲା । ଏତେ ଖୁସି ମିଜାସର ଲୋକ ଯେ, ନିଜେ ତାଙ୍କ ତରଫରୁ ସବୁ କାମରେ ଆଗୁଆ ସହେଯାଗର ହାତ ବଢାଇ ଦିଅନ୍ତି । ଆମ ପରିବାରରେ ଯେତେ ଶୁଭ ମାଙ୍ଗଳିକ କାର୍ଯ୍ୟ ଅନୁଷ୍ଠିତ ହେଇଚି, ଘରର ମୁଖ୍ୟ ହିସାବରେ ସିଏ ଯୋଗ ଦେବା ସହ ବେଶ୍ ଖୁସିର ବାତାବରଣ ଭରିଦେଇଛନ୍ତି । ଗାଁରେ ମଧ୍ୟ ସମସ୍ତଙ୍କ ସହ ଭଲ ସମ୍ପର୍କ ରଖି ବହୁ ଆନୁଷ୍ଠାନିକ କାର୍ଯ୍ୟ କରିଛନ୍ତି; ତା'ମଧ୍ୟରେ ନାଗଝର ନଦୀ କୂଳରେ ଆୟୋଜନ କରାଯାଉଥିବା ବାର୍ଷିକ ବନ୍ଧୁମିଳନ ଉତ୍ସବ ଓ ବଣଭୋଜି ଅନ୍ୟତମ।

## ପୁରୁଷୋତ୍ତମ ମହାପାତ୍ର (ଜଟି ଭାଇନା)

ଜଟି ଭାଇନାଙ୍କ ଅକାଳ ମୃତ୍ୟୁ ଆମ ସମସ୍ତଙ୍କ ପ୍ରତି ଏକ ଶକ୍ତ ଧକ୍କା । ଗାଁର ଉନ୍ନତି ପାଇଁ କେତେ କ'ଣ ଆମେ ଯୋଜନା କରିନଥିଲୁ ? ଈଶ୍ୱରଙ୍କ ଇଚ୍ଛା । ତାଙ୍କୁ ଏତେ ଶୀଘ୍ର ନେଇଯିବେ ବୋଲି ଆମେ ସ୍ୱପ୍ନରେ ବି ଭାବି ନଥିଲୁ । ଆମେ ସମବୟସର ପିଲାମାନେ ତାଙ୍କରି ନେତୃତ୍ୱରେ ଭୋଜି ଭାତ, ହସମଜା, ନାଟକ, ଏପରିକି ଚଗଲାମୀ ମଧ୍ୟ କରୁଥିଲୁ । ସେ କମ୍ କଥା କୁହନ୍ତି କିନ୍ତୁ କଥାରେ ଦମ୍ ଥାଏ । ସେ ବି. ଏ. ପାସ୍ କରି ପ୍ରଥମେ ଭୁ ବ ନେ ଶ୍ୱର ଓ ପରେ ପାରାଦ୍ୱୀପ ପୋର୍ଟରେ କାମ କରୁଥିଲେ ।

## ବାଲୁଙ୍କି ମହାପାତ୍ର

ଗାଁର ଦୁଇ ମହାପାତ୍ର ବଂଶରୁ ବାଲୁଙ୍କି ମହାପାତ୍ର ଜଣେ । ସେ ବାଣପୁର କୁମୁରାଙ୍ଗ ଶାସନର ମୂଳ ବାସିନ୍ଦା । ତାଙ୍କର ପାଞ୍ଚ ପୁଅ ଓ ଗୋଟିଏ ଝିଅ । ଆର୍ଥିକ ସ୍ଥିତି ସ୍ୱଚ୍ଛଳ ନଥାଇ ମଧ୍ୟ ଏତେ ବଡ଼ ପରିବାରକୁ ସେ ଚଳାଇବାରେ ସକ୍ଷମ ହୋଇ ପାରିଥିଲେ । ବଡ଼ ସ୍ୱାଭିମାନୀ ସେ । ସତ୍ୟବାଦୀ ଓ ସ୍ପଷ୍ଟବାଦୀ । ତାଙ୍କର ବଡ଼ ତିନି ପୁଅ (ବାଞ୍ଛାନିଧି, ରଘୁନାଥ ଓ ଜମ୍ଭେଶ୍ୱର) ଇହଧାମ ତ୍ୟାଗ କରିଗଲେଣି । ପ୍ରଫୁଲ୍ଲ ଭାଇନା ଭୁ ବ ନେ ଶ୍ୱରରେ ରୁହନ୍ତି । ସେ ଜଣେ ସୁଲେଖକ । ଚନ୍ଦ୍ର ଭାଇନା ମୋର ଅତି ଘନିଷ୍ଠ ସାଙ୍ଗ । ସେ ହିଁ ଗାଁରେ ରହି ବହୁ ଉନ୍ନତିମୂଳକ କାର୍ଯ୍ୟ କରିବାରେ ଉଦ୍ୟମ ଜାରି ରଖିଛନ୍ତି ।

## ସଦାଶିବ ଷଡଙ୍ଗୀ

ସଦା ଭାଇନା ଇହଧାମ ତ୍ୟାଗ କରିବାର ପାଞ୍ଚ/ଛଅ ବର୍ଷ ବିତିଗଲାଣି । ସଦାଭାଇନା ନୟାଗଡ଼ରେ ପରିବାର ସହ ରହୁଥିଲେ । ସେ ନୟାଗଡ଼ କ୍ଲବ ପରିଚାଳନା କରିବା ସହ ସମାଜ ଓ ଅନ୍ୟ ଦୈନିକ ସମ୍ବାଦପତ୍ର ବିତରଣ କରି ତାଙ୍କ ଗୁଜୁରାଣ ମେଣ୍ଟାଉ ଥିଲେ । ତାଙ୍କର ଗୋଟିଏ ପୁଅ ଓ ଚାରି ଝିଅ । ଆମେ ପିଲାଦିନୁ ତାଙ୍କୁ ଦେଖି ଆସିଛୁ ଯେ , ସେ ଗାଁର ପ୍ରାୟ ସବୁ ମାଙ୍ଗଳିକ କାର୍ଯ୍ୟରେ ଯୋଗ ଦିଅନ୍ତି । ମୁଁ ସେତେବେଳେ ଭାବୁଥିଲି, ସେ ଚନ୍ଦ୍ରଭାଇନାଙ୍କ ସମ୍ପର୍କୀୟ ।

ବହୁଦିନ ପରେ ଆମେ ଜାଣିଲୁ ଯେ, ସେ ଆମ ଗାଁର ମୂଳ ବାସିନ୍ଦାମାନଙ୍କ ମଧ୍ୟରୁ ଜଣେ ଏବଂ ଚନ୍ଦ୍ର ଭାଇନାଙ୍କ କକେଇ । ଅଜାଘର ପୁଅ ହୋଇ ରଣପୁର ଚାଲିଯିବା ହେତୁ ଷଡ଼ଙ୍ଗୀ ହେଲେ ଓ ଅପରିଚିତ ହୋଇଗଲେ । ଅଜାଙ୍କ ଆର୍ଥିକ ସ୍ଥିତି ଖରାପ ହୋଇଯିବା ପରେ ପୁନଶ୍ଚ ଗାଁକୁ ଚାଲିଆସିଲେ । ପରେ ଅବଶ୍ୟ ପରିସ୍ଥିତିର ତାଡ଼ନାରେ ସେ ଗାଁ ଛାଡିଦେଇ ନୟାଗଡ଼ରେ ବସବାସ କଲେ ।

ସେ ସମୟରେ ଆମ ବ୍ରାହ୍ମଣ ସମାଜରେ ଉଚ୍ଚନୀଚ ଭେଦଭାବ ଥିବାରୁ ବୈଦିକ, ଦାନୁଆ, ଉଣାପାଣିଆ ଇତ୍ୟାଦି ସ୍ତର ଭେଦରେ ନୂତନ ବନ୍ଧୁ ସମ୍ପର୍କ ସ୍ଥାପନ କରାଯାଉଥଲା । ସଦାଭାଇନା ଉଚ୍ଚସ୍ତରର ବ୍ରାହ୍ମଣ ଓ ବାଉଁସିଆ ଧନାଢ୍ୟ ବ୍ୟକ୍ତି ଶ୍ରୀ ରଘୁନାଥ ଦାଶ ତାଙ୍କ ତୁଳନାରେ ସାମାନ୍ୟ କମ୍ ସ୍ତରର । ତେବେ ସଦା ଭାଇନାଙ୍କ ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନ ଥାଇବି ଦାଶ ମହାଶୟ ନିଜ ପରିବାରର ଅନିଚ୍ଛାସତ୍ତ୍ୱେ ବାଟିଏ (୫ ଏକର) ଜମି ଓ ଆର୍ଥିକ ସହାୟତା ଦେଇ ଭଉଣୀର ବିବାହ ତାଙ୍କ ସହ କରାଇଲେ । ସଦା ଭାଇନାଙ୍କ ସେ ଦାମ୍ପତ୍ୟ ଜୀବନ ବେଶିଦିନ ତିଷ୍ଠି ରହିଲା ନାହିଁ କାରଣ ତାଙ୍କ ସ୍ତ୍ରୀଙ୍କର ଅକାଳ ମୃତ୍ୟୁ ଘଟିଲା । ତାଙ୍କ ଏକମାତ୍ର ପୁତ୍ର ଯଦିଓ ଆଈଙ୍କ ତତ୍ତ୍ୱାବଧାନରେ ବଢ଼ିଲା, ତା'ର ମଧ୍ୟ ଅକାଳ ବିୟୋଗ ଘଟିଲା ।

ଭାଗ୍ୟର ବିଡ଼ମ୍ବନା, ଭଉଣୀ ଓ ଭଣଜା ଚାଲିଯିବା ପରେ ଦାଶ ମହାଶୟଙ୍କର ଭିଣୋଇ ସହ ଆଉ ସମ୍ପର୍କ ରହିଲା ନାହିଁ । ଯେଉଁ ଜମି ଭଉଣୀକୁ ଯୌତୁକ ସ୍ୱରୂପ ପ୍ରଦାନ କରିଥିଲେ, ତାହା ଫେରାଇ ନେଲେ । ସଦା ଭାଇନାଙ୍କ ପାଖରେ କେବଳ ଡିହଖଣ୍ଡିକ ରହିଲା । ଗାଁରେ ରୋଜଗାରର ବିଶେଷ କିଛି ପନ୍ଥା ନ ଥିବାରୁ ଅନାଟନ ଭିତରେ ଦୁର୍ଦ୍ଦିନ ବଢିଲା । ତେଣୁ ବାଧ୍ୟ ହୋଇ ଡିହ ଖଣ୍ଡକ ବିକ୍ରି କରିଦେଲେ ଓ ନୟାଗଡ଼ ଯାଇ ବସବାସ କଲେ ।

## ବୈଦ୍ୟନାଥ ମିଶ୍ର

ଗ୍ରାମର ପଶ୍ଚିମ ଦିଗ ଠାକୁରାଣୀ ମନ୍ଦିର ସମ୍ମୁଖରେ ବୈଦ୍ୟନାଥ ମିଶ୍ରଙ୍କ ଘର । ତାଙ୍କ ନାନାଙ୍କ ନାମ ମହାଦେବ ମିଶ୍ର। ୬ ଜଗନ୍ନାଥ ମିଶ୍ର ବିନାୟକପୁର ଶାସନରୁ ଆମ ଗାଁକୁ ଆସିଥିଲେ । ବଂଶାନୁକ୍ରମ ତଥ୍ୟ ଅନୁଯାୟୀ, ଜୈନେକ ମହାଦେବ ମହାପାତ୍ର ଖଣ୍ଡପଡ଼ା ଗଡ଼ ବଡ଼ଦାଣ୍ଡ ସାହିର ବାସିନ୍ଦା ଥିଲେ। ସେ ବିନାୟକପୁର

ଶାସନରେ ବିବାହ କରିଥିଲେ ଓ ତାଙ୍କ ପୁତ୍ରର ନାମ ଜଗନ୍ନାଥ ମହାପାତ୍ର। ଅଜା ଅପୁତ୍ରିକ ଥିବାରୁ, ନାତି ଜଗନ୍ନାଥକୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିବାରୁ ସେ ମିଶ୍ର ହୋଇଗଲେ । ଜଗନ୍ନାଥ ମିଶ୍ର ଆମ ଗାଁ ଲୋକନାଥ ପଟ୍ଟଜୋଶୀଙ୍କ କନ୍ୟା ପଦ୍ମାବତୀଙ୍କୁ ବିବାହ କରିଥିଲେ । ସମୟକ୍ରମେ ସେ ପ୍ରଶାସନିକ ଉତ୍ପୀଡନର ଶିକାର ହୋଇ ସମସ୍ତ ସ୍ଥାବର ଓ ଅସ୍ଥାବର ସମ୍ପତ୍ତି ହରାଇ ଦେବାରୁ ଶ୍ୱଶୁର ଘର ସହାୟତାରେ ଆମ ଗାଁକୁ ଚାଲି ଆସିଲେ । ତେଣୁ ଜଣାଯାଏ, ସେଇ ବଂଶ ଆମ ଗାଁର ମୂଳ ଅଧିବାସୀ । ସେମାନେ ତିନି ଭାଇ । ଜ୍ୟେଷ୍ଠ ସଦାଶିବ କଲିକତା ଚାଲିଯିବା ପରେ ତାଙ୍କ ବିଷୟରେ ବିଶେଷ ଖବର ମିଳିଲା ନାହିଁ । ସାନ ଭାଇ ନରସିଂହ ନୟାଗଡ଼ର ସ୍ଥାୟୀ ବାସିନ୍ଦା ହୋଇରହିଲେ । ନରସିଂହ ମିଶ୍ର ମୋର କକେଇ ନରସିଂହ ମହାପାତ୍ରଙ୍କ ଭଉଣୀ ଉମାନାନିଙ୍କୁ ବିବାହ କରିଥିଲେ । ତେଣୁ ତାଙ୍କ ବଡ଼ ଭାଇ ହିସାବରେ ସମ୍ପର୍କରେ ବୈଦ୍ୟନାଥ ମିଶ୍ର ମୋର ପିଉଷା । ପ୍ରଥମ ସ୍ତ୍ରୀଙ୍କ ଔରଷରୁ ଗୋଟିଏ ପୁଅ ଓ ଦୁଇ କନ୍ୟା (ଦୟାନିଧି, ରାଜଲକ୍ଷ୍ମୀ ଓ ବସନ୍ତ) ଜନ୍ମ ନେବାପରେ ସ୍ତ୍ରୀଙ୍କର ଅକାଳ ମୃତ୍ୟୁ ଘଟିବାରୁ ପୁନର୍ବାର ବିବାହ କଲେ । ସେମାନଙ୍କ ଔରଷରୁ ଚାରି ପୁଅ ଓ ତିନି ଝିଅ ଜନ୍ମ ନେଲେ । ତାଙ୍କର ଆର୍ଥିକ ସ୍ଥିତି ସ୍ୱଚ୍ଛଳ ନଥିଲା । ଜମି କହିଲେ ଅଳ୍ପ କିଛି ଥିଲା । ବଡ଼ ପୁଅ ଅଜାଙ୍କୁ ଦତ୍ତ ହୋଇଯିବା ପରେ ପରିବାରର ଅନ୍ୟ ସଦସ୍ୟଙ୍କ ଭରଣପୋଷଣ ସେ ପୁରୋହିତ କର୍ମ କରି କୌଣସି ପ୍ରକାରେ ଚଳେଇ ନେଉଥିଲେ । ବୈଦ୍ୟନାଥ ମିଶ୍ର ଭାରି ସ୍ୱାଭିମାନୀ ।

## ନରସିଂହ ମିଶ୍ର

ନରସିଂହ ମିଶ୍ର ବୈଦ୍ୟନାଥ ମିଶ୍ରଙ୍କର ସାନ ଭାଇ । କିନ୍ତୁ ଅନେକେ ସେକଥା ଜାଣି ନଥାନ୍ତି, କାରଣ ସେ ପିଲାବେଳୁ ବାହାରେ ରହୁଥିଲେ ଓ ଚାକିରି କରିବା ପରେବି ଅନେକ ସ୍ଥାନକୁ ବଦଳି ହେବାରୁ ବାହାରେ ରହି ପରିଶେଷରେ ନୟାଗଡ଼ର ସ୍ଥାୟି ବାସିନ୍ଦା ହୋଇଗଲେ । ତାଙ୍କର ତିନି ପୁଅ ଓ ତିନିଝିଅ । ବଡ଼ ପୁଅ ସଦାଶିବ ମିଶ୍ରଙ୍କ ବିଷୟରେ ଯଦିଓ ବିଶେଷ ତଥ୍ୟ ନାହିଁ, ସେ କଲିକତା ଯାଇ ସେଠାରେ ପୂଜାର୍ଚ୍ଚନା କରିବା ସହ ପୂଜାସାମଗ୍ରୀ ଦୋକାନ ଦେଇ ଗୁଜରାଣ ମେଣ୍ଟାଉଥିଲେ ।

ନରସିଂହ ମିଶ୍ରଙ୍କ ଜନ୍ମ ୧୯୧୪ ମସିହା । ବାଲ୍ୟଜୀବନ ଗାଁରେ କଟାଇଲେ । ତୃତୀୟଶ୍ରେଣୀ ଉତ୍ତୀର୍ଣ୍ଣ ହେବାପରେ ଇଟାମାଟିରେ ମଧ୍ୟ ଇଂରାଜୀ ଶିକ୍ଷା ଓ ପରେ ବାଣପୁର (କୁମୁରାଙ୍ଗ) ଭଉଣୀଘରେ ରହି ଉଚ୍ଚ ଇଂରାଜୀ ଶିକ୍ଷା ପ୍ରାପ୍ତ କରିଥଲେ । ଅବଶ୍ୟ ମାଟ୍ରିକ ପରୀକ୍ଷା ଦେବା ପୂର୍ବରୁ, ବଡଭାଇଙ୍କ ନିର୍ଦ୍ଦେଶ କ୍ରମେ କଲିକତା ଚାଲିଗଲେ । ସେ ଯଦିଓ ବଡ଼ଭାଇଙ୍କ ବ୍ୟବସାୟରେ ସହଯୋଗ କଲେ, ଦୋକାନରେ ଚୋରୀ ହୋଇଯିବା ଘଟଣାରେ ବଡ଼ ଭାଇଙ୍କ ବ୍ୟବହାରରେ ଅତିଷ୍ଠ ହୋଇ କଟକ ଚାଲିଆସିଲେ । ବଖରା ବାଦରେ ମାହାଦେବ ମନ୍ଦିର ପୂଜକ ହେବା ସହ ଘରୋଇ ଟିଉସନ କରି କିଛି ରୋଜଗାର କଲେ । ତା' ମଧ୍ୟରେ ନିଜ ଉଦ୍ୟମ ଓ ଯୋଗସୂତ୍ର ଫଳରେ ମଧୁପାଟଣାସ୍ଥ ଏକ କାଷ୍ଠ ଶିଳ୍ପ ସଂସ୍ଥାରେ ନିଯୁକ୍ତି ପାଇଲେ । କାଷ୍ଠଶିଳ୍ପ ପରିଚାଳନା ତାଲିମ ଓ ନିଜ ଅଭିଜ୍ଞତା ବଳରେ, ସେ ନୟାଗଡ ରାଜ୍ୟର ରାଜା କୃଷ୍ଣଚନ୍ଦ୍ର ମାନଧାତାଙ୍କ ଦ୍ୱାରା ପ୍ରତିଷ୍ଠା କରାଯାଇଥିବା ଶିଳ୍ପବିଦ୍ୟାଳୟରେ ଶିକ୍ଷକତା କଲେ। ଦେଶ ସ୍ୱାଧୀନତା ଲାଭ କରିବା ପରେ ବିଦ୍ୟାଳୟଟି ସରକାରୀ ମାନ୍ୟତା ପାଇଲା । ତେଣୁ ତାଙ୍କର ଅନ୍ୟ ବିଦ୍ୟାଳୟକୁ ବଦଳିହେଲା। ସେ ବ୍ରହ୍ମପୁର, ସୋନପୁର ଭଦ୍ରକ ଆଦି ଅନେକ ସ୍ଥାନରେ ଶିକ୍ଷକତା କରିଥିଲେ। ୧୯୬୩ ମସିହା ଠାରୁ ସରକାର ଶିଳ୍ପବିଦ୍ୟାଳୟଗୁଡିକୁ ଶିଳ୍ପତାଲିମକେନ୍ଦ୍ର (ଅଇ ଟି ଆଇ)ରେ ପରିଣତ କରିଦେଲେ । ନରସିଂହ ମିଶ୍ର ସେ ବିଭାଗରେ ପରିଦର୍ଶକରୂପେ ନିଯୁକ୍ତି ପାଇ ବ୍ରହ୍ମପୁର ଓ ପୁରୀ ଦପ୍ତରରେ କାର୍ଯ୍ୟକରି ୧୯୭୨ ମସିହାରେ ଅବସର ନେଲେ । ପରିବର୍ତ୍ତିତ ନିୟମାବଳୀ ଓ ତାଙ୍କ କର୍ମନିଷ୍ଠା ପାଇଁ ସେ ପୁନର୍ବାର ଖଦିବୋର୍ଡରେ ନିଯୁକ୍ତି ପାଇ ୧୯୭୫ରେ ଚାକିରିରୁ ପୂର୍ଣ୍ଣ ଅବ୍ୟାହତି ନେଲେ । ୧୯୫୮ ମସିହା ଠାରୁ ନୟାଗଡରସ୍ଥାୟୀ ବାସିନ୍ଦା ହୋଇଗଲେ ।

୰ ନରସିଂହମିଶ୍ର ନିଜ ଗାଁର ଭାରତ ଭୂଷଣ ଗଳ୍ପସାଗର ୰ଗୋଦାବରୀଶ ମହାପାତ୍ରଙ୍କ ସୁପୁତ୍ରୀ ଉମା ଦେବୀଙ୍କୁ ବିବାହ କରିଥିଲେ । ସେମାନଙ୍କ ଔରଷରୁ ଚାରି ପୁଅ ଓ ଦୁଇକନ୍ୟା ଜନ୍ମ ନେଲେ । ସେ ଆମ ଗ୍ରାମର ସମସ୍ତଙ୍କ ମଧ୍ୟରେ ଦୀର୍ଘାୟୁ ଓ ୧୦୨ ବର୍ଷରେ ଇହଧାମ ତ୍ୟାଗକଲେ । ସେ ଜଣେ କର୍ମଠ, ନିରାଡ଼ମ୍ବର, ଈଶ୍ୱର ବିଶ୍ୱାସୀ ମଣିଷ । ପୂଜାର୍ଚ୍ଚନା, ଧର୍ମଚର୍ଚ୍ଚା, ଗୀତା, ଭାଗବତ ପଠନ ଓ ଆଲୋଚନା କରି ଏକ ଶୃଙ୍ଖଳିତ ଜୀବନ ବିତାଇ ଏକ ଆଦର୍ଶ ମଣିଷ ହୋଇ ରହିଗଲେ ।

## ଭାଇଗ ବୋଉ (ସ୍ୱାମୀ ଆର୍ତ୍ତବନ୍ଧୁ ମହାପାତ୍ର)

ନାଁରୁ ଜଣାପଡେ ତାଙ୍କର ଭାଇଗ ନାମରେ ଗୋଟିଏ ପୁଅ ଥିଲା, କିନ୍ତୁ ଆମେ କେହି ତାଙ୍କ ପୁଅ କିମ୍ବା ସ୍ୱାମୀଙ୍କୁ ଦେଖିନୁ । ପିଲାଦିନୁ ଆମେ ତାଙ୍କୁ ବିଧବା ରୂପେ ଦେଖିଆସିଛୁ । ତାଙ୍କ ବାଡ଼ିରେ ଗୋଟିଏ ଅଶ୍ୱସ୍ତ ଗଛ ଥିଲା ଓ ସେ ସପୁରୀ, ଅସାତୁଆ ଭଳି ନାନା ଜାତିର ଫଳ ଗଛ ଲଗାଇଥିଲେ । ତାଙ୍କ ଘରକୁ ଯିବାକୁ ଭାରି ଭୟ ଲାଗେ କାରଣ ଗାଁ ଲୋକେ କୁହନ୍ତି ସେଠାରେ ଭୂତ ଅଛି । ତାଙ୍କ ଘରେ ଆଉ ଜଣେ ବିଧବା ରହୁଥିଲେ । ତାଙ୍କୁ ସମସ୍ତେ ବାଉରୀ / ବାଙ୍କ ବୋଉ ବୋଲି ଡାକନ୍ତି ।

## ଲୋକନାଥ ମିଶ୍ର

ଆମ ଗାଁରେ ଲୋକନାଥ ମିଶ୍ରଙ୍କ ସ୍ଥାନ ସ୍ୱତନ୍ତ୍ର । କାରଣ ତାଙ୍କ ବିନା ଉପସ୍ଥିତିରେ କିମ୍ବା ସହଯୋଗରେ ଗାଁର କୌଣସି ଓଷା, ବ୍ରତ, ଶୁଭ (ମାଙ୍ଗଳିକ) ଅଶୁଭ କାର୍ଯ୍ୟ ଇତ୍ୟାଦି ହେବା ଅସମ୍ଭବ । ସେ ଏସବୁ କାର୍ଯ୍ୟରେ ନିଜ ପର ବିଚାର ନକରି ବିନା ଡାକରାରେ ସ୍ୱତଃ ପ୍ରବୃତ୍ତ ଭାଗ ନେଇଥାନ୍ତି ଓ ପୁରା ଦମ୍‌ରେ କାମରେ ଲାଗିଯାଆନ୍ତି । ଆର୍ଥିକ ସ୍ଥିତି ସ୍ୱଚ୍ଛଳ ନଥିଲେ ବି ଭାରି ସ୍ୱାଭିମାନୀ । ସେ ସରକାରୀ ଚାକିରି କରିଥିଲେ, କିନ୍ତୁ ଚାକିରି ପସନ୍ଦ ନଲାଗିବାରୁ ଅବ୍ୟାହତି ନେଇ ଗାଁରେ ହିଁ ରହିଲେ ଓ ଜନହିତକର କାର୍ଯ୍ୟରେ ସମୟ ବିନିଯୋଗ କଲେ । ଅବଶ୍ୟ ତାଙ୍କର ଏସବୁ ଭଲଗୁଣ ଥାଇ ବି ପର କାର୍ଯ୍ୟରେ ଅତ୍ୟଧିକ ହସ୍ତକ୍ଷେପ ନେଇ ବିଭ୍ରାଟ ସୃଷ୍ଟି ହେବା ସହ ପରସ୍ପର ମଧ୍ୟରେ କଳହ ଓ ମତାନ୍ତର ହେବାର ଦୃଷ୍ଟାନ୍ତ ରହିଛି । ସେ ଜଣେ ଚର୍ଚ୍ଚିତ ଚରିତ୍ର ହେଲେ ବି ପରୋପକାରୀ ଓ ସମବେଦନା ଜ୍ଞାପନକାରୀ ବ୍ୟକ୍ତି । ତାଙ୍କ ପରିବାର କହିଲେ ବିଧବା ବୋଉ ଓ ସେ । ତାଙ୍କ ଦାମ୍ପତ୍ୟ ଜୀବନରେ ନାନା ଉତ୍‌ଥାନ ପତନ ଘଟିଥିଲା । ବିବାହ ପରେ ଯଦିଓ ସୁଖର ସଂସାର ଠିକ୍ ଚାଲିଥିଲା, ତାଙ୍କର କଠୋର ବ୍ୟବହାରରେ ଅତିଷ୍ଠ ହୋଇ ପତ୍ନୀ ପିତାଙ୍କ ଘରକୁ ଚାଲିଗଲେ । ହାଡ଼ିମା, ଯେକି ତାଙ୍କ ଘରେ ଆଶ୍ରୟ ନେଇଥିଲା ଓ ଘରକଥା ବୁଝୁଥିଲା, ମିଶ୍ର ମହାଶୟ ତା' ଉପରେ ସବୁ ନ୍ୟସ୍ତ କରି ନିଜେ ଏଣେ ତେଣେ ବୁଲିଲେ । ସେ ଯାହାହେଉ, ସମୟକ୍ରମେ ସବୁର ସମାଧାନ ହେଲା, ପତ୍ନୀ

ଘରକୁ ଫେରିଲେ, ସଂସାର ବଢିଲା, ବଡ ପୁଅ ସୁରିଆ ମାଟ୍ରିକ୍ ପାସ୍ କରି ସରକାରୀ ଚାକିରି କଲା ଓ ଝିଅ ଦୁଇଟି ବିବାହ କରିବାପରେ ସୁଖର ସଂସାର ପୁନଃ ପ୍ରତିଷ୍ଠା ହେଲା । ତାଙ୍କ ଉଦ୍ଦେଶ୍ୟରେ ଭାବର ପରିପ୍ରକାଶ ଏଇ କେଇପଦ।

## ଲୋକନାଥ ମିଶ୍ର

ନିଆରା ମଣିଷ ଭିନ୍ନ ତାଙ୍କ ଢଙ୍ଗ
ବିଚିତ୍ର ଭାଷା ବେଭାର।
କ୍ଷଣକେ ବନ୍ଧୁତା ହସ କୋଳାକୋଳି
ଚାହୁଁ ଚାହୁଁ ହେବେ ପର॥

ଧୋବ ଫରଫର ଧୋତି କୁର୍ତ୍ତା ପିନ୍ଧି
ସୁନ୍ଦର ଅଙ୍ଗ ଢଙ୍ଗରେ।
ଦାଣ୍ଡରେ ବୁଲିଲେ ଜଣାଯାଏ ସତେ
ଅଛନ୍ତି ବଡ଼ ବ୍ୟସ୍ତରେ॥

ଏ ଘରେ ମଉଷା ସେ ଘରେ ପିଉଷା
ନିଜ ପର ଭାବ ନାଇଁ।
କଥା ଦେବାରେ ତ ନାହିଁ ପଛଘୁଞ୍ଚା
କାମବେଳେ ଲୋକା କାଇଁ॥

କେବେ ପରାମର୍ଶ କେବେ ଆଶ୍ୱାସନା
ଘରର ସଦସ୍ୟ ପରି।
ଲାଗିବ ଯେମିତି ଗୋଟାପଣେ ସିଏ
ଭଲ ଚିନ୍ତନ୍ତି ଆମରି॥

ସାଇକେଲ ଖଣ୍ଡେ ମିଳିଯାଏ ଯେବେ
ଆଉ ତାଙ୍କୁ ଦେଖେ କିଏ।
ଲୋକା ଗଲା କାହିଁ ଗାଁଆସାରା ବୁରି
କଥା ଦେଇଥିଲା ସିଏ॥

କିଏ କହେ ତାଙ୍କୁ ଏବେ ମୁଁ ଦେଖିଲି
ଶରଣକୁଳ ଦାଣ୍ଡରେ।
ଆଉ କିଏ କହେ ନୟାଗଡ ଯିବେ
ରହିବେ ପିଇସି ଘରେ।।

ଯାନିଯାତ୍ରା ମେଳା ମହୋତ୍ସବ ଆଦି
ଯାହାବି ଗାଁଆରେ ହେବ।
ସଭିଏ କୁହନ୍ତି ଲୋକାକୁ ଡାକୁନ
ତା' ବିନା କିଏ କରିବ।।

ଏକ ହାତେ ବିଡଶ ଅନ୍ୟ ହାତେ ଟର୍ଚ୍ଚ
ଟହଲ ମାରି ଦାଣ୍ଡରେ।
ସବୁ କଳା ଭଳି ଜଣାପଡୁ ଥିବେ
ନଥିବେ କେଉଁ କାମରେ।।

ଯଦିଓ ଅଭାବୀ ଆତ୍ମ ସମ୍ମାନକୁ
ପଦାରେ ପକାନ୍ତି ନାହିଁ।
ଲଗାମ ନଥାଏ ତୁଣ୍ଡରେ ତାଙ୍କର
ଦିଅନ୍ତି ଯାହାବି କହି।।

ଭୁଲିହେବ ନାହିଁ ତାଙ୍କ ବଦାନ୍ୟତା
ଉତ୍ତମ ଗୁଣ ତାଙ୍କର।
ପରକାମ ପାଇଁ ବେଳ କି ଅବେଳ
ନଥାଏ ମନେ ବିଚାର।।

ମେଳା ମହୋତ୍ସବ ଯାତ୍ରା ପର୍ବ ବେଳେ
ଆଗୁଆ ହେବେ ହାଜର।
ମଡା ପଡଥିଲେ ସାହାସ ଦିଅନ୍ତି
କରନ୍ତି ଶବ ସତ୍କାର।।

ସାରା ଜୀବନଟା ସଂଘର୍ଷରେ ଗଲା
ଦୁଃଖରେ ଦିନ କଟିଲା।
ପୁଅର ଚାକିରି ହେବାପରେ ତାଙ୍କୁ
ଖୁସି ଆଶ୍ୱସ୍ତି ମିଳିଲା।।

## ରାମଚନ୍ଦ୍ରକର (ପୋଷ୍ଟ ମାଷ୍ଟ୍ରେ)

ଗାଆଁ ଶାଖା ଡାକଘରେ ଡାକମାଷ୍ଟ ଥିଲେ ସିଏ।
କର୍ତ୍ତବ୍ୟନିଷ୍ଠ ସାଧୁତା ତାଙ୍କ ପରି ଆଉ କିଏ।।
ସମୟ ଅନୁବର୍ତ୍ତିତା ପାରଦର୍ଶିତା କାର୍ଯ୍ୟରେ।
ଆଇସବୁ ଭଲଗୁଣ ନ ଥିଲା ଗର୍ବ ମନରେ।।
କଥାରେ ସାମନ୍ୟ କ୍ରୋଧ କିନ୍ତୁ ମନେ ଦୟାଭାବ।
ସେହି କାମ କରନ୍ତି ସେ ନିଜ ହୃଦ ଯା' କହିବ।।
ବହୁ କୁଟୁମ୍ବୀ ସେ ହେଲେ ସଦା ସ୍ଥିର ତାଙ୍କ ମନ।
ଯେନତେନ ପ୍ରକାରେଣ କରିଥାନ୍ତି ଗୁଜରାଣ ।।
ପରଦୁଃଖ ପ୍ରତି କେବେ ନ ଥାଏ ସମବେଦନା।
ଅବାପର ସୁଖେ କେବେ ନ ଥାନ୍ତି ସେ ସୁଖୀମନା।।
ଜମିବାଡି ଘରଦ୍ୱାର ଯାହା କିଛି ରୋଜଗାର।
ନିଜ କର୍ମ ବଳ ନେଇ ସୁନ୍ଦର ତାଙ୍କ ସଂସାର।।
ଭଲ ମଣିଷ ସେ ଥିଲେ ମିତବ୍ୟୟିତା ବାଣ୍ଟିଲେ।
ରାମଚନ୍ଦ୍ର ନାମ ତାଙ୍କ ରାମଚନ୍ଦ୍ର ପରି ଥିଲେ।।

ରାମଚନ୍ଦ୍ର କର ଗୋଲଗାଁର ମୂଳ ଅଧିବାସୀ । ଆଚାର୍ଯ୍ୟଙ୍କ ଘର ସାମନାରେ ତାଙ୍କ ଘର । ତାଙ୍କ ନନାଙ୍କ ଅମଳରେ ସେ ପରିବାର ଆମ ଗାଁକୁ ଆସିଥିଲେ । କିନ୍ତୁ ମୋର ହେତୁ ହେବାବେଳକୁ ତାଙ୍କ ନନାଙ୍କର କାଳ ହୋଇଯାଇଥିଲା ।ତେଣୁ ତାଙ୍କ ପରିବାର କହିଲେ, ତାଙ୍କ ବୋଉ, ରାମ କକେଇ ଓ ତାଙ୍କ ସନ୍ତାନ ସନ୍ତତି । ସେ ସଂସ୍କୃତରେ ବିଦ୍ୟାଧ୍ୟନ କରିଥିଲେ । ସାରସ୍ୱତ ଲୋକ ବିଦ୍ୟାପୀଠ ଆରମ୍ଭ ହେବା ସମୟରେ ସେ କିଛିଦିନ ସଂସ୍କୃତ ଶିକ୍ଷକ ରୂପେ ଯୋଗ ଦେଇଥିଲେ ।

୧୯୫୪ ମସିହାରେ ଗାଁରେ ଡାକଘର ପ୍ରତିଷ୍ଠା ହେବାରୁ ସେ ପୋଷ୍ଟମାଷ୍ଟ୍ର ପଦରେ ନିରବଚ୍ଛିନ୍ନ ଭାବେ କାମ କଲେ । ସେ ଜଣେ କର୍ମଠ, କର୍ତ୍ତବ୍ୟନିଷ୍ଠ ବ୍ୟକ୍ତି ।

## ଲୋକା ରାମଚନ୍ଦ୍ର ବନ୍ଧୁତ୍ୱ ଡୋରି

ଗଲେଣି କେବେଠାରୁ          କର ମିଶ୍ର ଆପଣେ ।
ସ୍ମୃତିରେ ଛାପ ହୋଇ          ରହିଛି ସବୁ ମନେ ।।
ଲୋକା ନଥିଲେ          କରେ ତାଙ୍କ କଥା ଗପନ୍ତି ।
କରଙ୍କୁ ନଦେଖିଲେ          ମିଶ୍ରେ ଟାହି କରନ୍ତି ।।
ଭୋଜିଭାତ ପର୍ବରେ          ଦୁହେଁ ଆଗ ହାଜର ।
ଶୀତ ଦିନ ସକାଳେ          ଧୂନୀ ପାଇଁ ନଜର ।।
ଗାଁ ଟୋକାଏ ଆସି          ହୁଅନ୍ତି ଦାଣ୍ଡେ ଠିଆ ।
ଡାକନ୍ତି ବାବୁଲାକୁ          ହେବନି କିରେ ନିଆଁ ।।
ଚାରିପାଖରେ ଲୋକ          ମଝିରେ ଧୂନି ନିଆଁ ।
ଚର୍ଚ୍ଚା ଆରମ୍ଭ ହୁଏ          ତା' ସଙ୍ଗେ ନିଆଁପୁଆଁ ।।
ଖଟିରେ ନାନାକଥା          ନଥାଏ ସୀମା ତାର ।
ଢିଙ୍କିଶାଳରୁ ଲମ୍ବି          ଯାଏ ତା ଢେଙ୍କାନାଳ ।।
କର ମହାଶୟଙ୍କ          କଥା ଭାରି ରୋଚକ ।
କଉତୁକିଆ ଢଗ          ଥଟ୍ଟା ମଜା ଅଧିକ ।।
ପିଲାଠୁ ବୁଢାଯାଏ          ଶୁଣି ବହେ ହସନ୍ତି ।
ନିଆଁପୁଆଁ ସାଙ୍ଗକୁ          ବଡ ମଜା ଉଠାନ୍ତି ।।
ଦିନକର ଘଟଣା          ଲୋକାମିଶ୍ରେ ନଥିଲେ ।
ତାଙ୍କ ଦେଖା ନପାଇ          ରାମ କର କହିଲେ ।।
କାଲିତ ଦେଖିଥିଲି          ଆଜି ଗଲା କୁଆଡେ ।
କିକାମ ପଡିଲାଯେ          ଦିଶୁନାହିଁ ଗାଁଆରେ ।।
କିଏ କହିଲା କାଲି          ସନ୍ଧ୍ୟାରେ କହୁଥିଲେ ।
ଜରୁରୀ କାମ ଅଛି          ଯିବେ ସାଇକେଲରେ ।।
କର ଟିପଣୀ ଦେଲେ          ଗଭର୍ଣ୍ଣର ସିଏ ତ ।

ଅଫିସ କାମ ଏତେ ଯିବାକୁ ପଡିବତ ।।
ଲୋକାର କଥା କ'ଣ ଆଜି ଅଛି ଏଇଠି ।
ସାଇକେଲ ଧରିଲେ ନପାଇବ କେଉଁଠି ।।
ରାମ କରଙ୍କ ସହ ଲୋକା ମିଶ୍ରଙ୍କ ଯୋଡି ।
ଅନ୍ତରଙ୍ଗ କରିଲା ତାଙ୍କ ବନ୍ଧୁତ୍ୱ ଡୋରି ।।
ଥଟ୍ଟା ମଜା ଆକ୍ଷେପ ଆଉ ନାନା ଟିପ୍ପଣୀ ।
କିଏ ବା ନ ହସିବ ଦୁହିଁଙ୍କ କଥା ଶୁଣି ।।

## ଚିନ୍ତାମଣି ମହାପାତ୍ର (ଚିନ୍ତାପଣ୍ଡା)

ଆମଗାଁ ଲୋକନାଥଦେବଙ୍କ ପୂଜକ ପରିବାର ମଧ୍ୟରୁ ସିଏ ଜଣେ । ଡେଙ୍ଗା ଗୋରାତକ୍ ତକ୍ ଚେହେରା ହସହସମୁଖ କିନ୍ତୁ ନିଃସନ୍ତାନ ଥିବାରୁ ଦୁଃଖ ହେବା ସ୍ୱାଭବିକ । ତଥାପି ମନର ବେଦନା ମନରେ ଚାପିରଖି ସିଏ ଠାକୁର ପୂଜା ସହ ମେଳା ମହୋତ୍ସବ ଓ ଗାଁର ଭୋଜିଭାତରେ ମୁଖ୍ୟ ଭୂମିକା ନିଭାଇଥାନ୍ତି । ପର୍ବପର୍ବାଣୀ ଶ୍ରାଦ୍ଧ ମେଳାରେ ତାଙ୍କ ହାତ ତିଆରି ସୁଜିଖିରି, ଚୁଡାଘଷା ରସାବଳୀ, ମୁଆଁ, ଉଖୁଡା ଓ ଚହ୍ଲାଦହି ସଭିଏଁ ମନେରଖିଛନ୍ତି । ପିଲାଦିନ କଥା ମନେପଡ଼ିଲେ ଭାରି ଖୁସି ଲାଗେ । ଆମେ ଅପେକ୍ଷା କରିଥାଉ ସେଇଦିନକୁ କାହାର କେଉଁଦିନ ଶ୍ରାଦ୍ଧ ଭୋଜି ଅଛି ଓ ସେଇଟା କେଉଁ ବାର । ଛୁଟି ଥିଲେ ତ ଚିନ୍ତାନାହିଁ, ନହେଲେ ଛୁଟିହେବା ସାଙ୍ଗେସାଙ୍ଗେ ଶୀଘ୍ର ଆସି ତାଙ୍କ ଦୁଆରେ ଠିଆ । ଦହି ଉଖୁଡା ଭୋଜି। ଚିନ୍ତାପଣ୍ଡା କିଛିବର୍ଷ ପାଇଁ ରେଙ୍ଗୁନ୍ ଯାଇଥିଲେ ।

## ସତ୍ୟବାଦୀ ମହାପାତ୍ର

୰ସତ୍ୟବାଦୀ ମହାପାତ୍ର ମୋର ସଙ୍ଗାତ । ସମବୟସର, ଦୁହେଁ ମିଶି ସ୍କୁଲ୍ ଯିବା ଅସିବା କରୁ । ସିଏ ଅବଶ୍ୟ ନବମଶ୍ରେଣୀରୁ ପଢାବନ୍ଦ କରିଦେଇ ଘର କାମରେ ନନାଙ୍କୁ ସାହାଯ୍ୟ କଲେ । ମୁଁ ପାଠପଢା, ଚାକିରି, ଘରସଂସାର ଇତ୍ୟାଦି ଗତାନୁଗତିକ ଗୃହଜଞ୍ଜାଳରେ ବୁଡି ରହିବାରୁ ଯଦିଓ ବନ୍ଧୁତ୍ୱର ନିବିଡ଼ତାରେ ସାମାନ୍ୟ ଫିକା ପଡ଼ିଥିଲା, କିନ୍ତୁ ଯେବେବି ଗାଁକୁ ଆସେ, ତାଙ୍କସହ କିଛି ସମୟ କଟାଏ,

ଭାବ ଆଦାନପ୍ରଦାନ କରି ଖୁସି ଅନୁଭବ କରେ । ଗାଁର ସମସ୍ତ ଘଟଣା ତାଙ୍କଠାରୁ ଶୁଣେ । କିଛି ରୋଚକ ଘଟଣା ଶୁଣି ଆମେ ଦୁହେଁ ମଜାନେଉ । ମୁଁ ତାଙ୍କ ପିଲାଦିନର କଥା ବେଳେ ବେଳେ ମନେ ପକାଇଦିଏ । ସ୍କୁଲ୍‌କୁ ଯିବା ପୂର୍ବରୁ ମୁଁ ଯେତେବେଳେ ତାଙ୍କୁ ଡାକିବାକୁ ଯାଏ, ତାଙ୍କବୋଉ ଗରମ ଭାତରେ ସଦ୍ୟ ଦୁଆଁ ହୋଇଥିବା କ୍ଷୀର ମିଶାଇ ଖାଇବାକୁ ଦିଅନ୍ତି । ଅନ୍ୟ ଏକ ଘଟଣା । ସିଏ ଭାରି କୁକୁର ପ୍ରେମୀ । ତାଙ୍କର ଗୋଟେ କସରା କୁକୁର ଥିଲା ତା'ସହ ଦିନରାତି ଖେଳନ୍ତି । ବିଶେଷକରି ସିଏ ମହରିକି ସ୍ୱାଇଁ ପୁଅ ଅରିଆ ସାଙ୍ଗରେ ବେଶି ସମୟ ଖେଳନ୍ତି । ଅରିଆର କାଳିଆ କୁକୁର ଓ ତାଙ୍କ କସରା କୁକୁରକୁ ହଳ କରି ବିଭିନ୍ନ ଖେଳ ଖେଳୁଥାନ୍ତି ।

ତାଙ୍କର ଆକସ୍ମିକ ବିୟୋଗ ଶୁଣି ମୁଁ ସ୍ତବ୍ଧ ହେଇଗଲି । ସମବୟସ ହେତୁ ଏତେ କମ୍ ବୟସରେ ଆରପାରିକୁ ଚାଲିଯିବେ ବିଶ୍ୱାସ ହେଲାନି । ୨୫/୧୧/୨୦୧୫, କାର୍ତ୍ତିକ ମାସ, ପୂର୍ଣ୍ଣମୀ । ବଡକୁଟୁଣୀ ଗାଁରେ ଜଣେ ଜଜମାନ ଘରେ ପୂଜା କରିବା ସମୟରେ ଭଗବାନଙ୍କ ଚରଣରେ ଶରଣ ଗଲେ । ଏପରି ଏକ ପବିତ୍ର ଦିନରେ ମୃତ୍ୟୁ ଲଭିବା ମାନେ ସେ ଜଣେ ବଡ ଭାଗ୍ୟବନ୍ତ ପୁରୁଷ । ମୁଁ ତାଙ୍କୁ ନିକଟରୁ ଦେଖିଚି, ତାଙ୍କ ମନକଥା ସେ ମୋ'ଆଗରେ କହିବା ବେଳେ ମୁଁ ଭାବେ ସିଏ ପ୍ରକୃତରେ ଜଣେ ସୁଖି ଲୋକ । କାରଣ ଅର୍ଥାଭାବ ଥାଇ ବି ସଦାବେଳେ ହସହସ ମୁହଁ, ମନରେ କ୍ଷୋଭ କିମ୍ବା ଅନୁଶୋଚନା ନାହିଁ, ଆଙ୍ଗୁଠି ଫୁଟାଇ ରାସ୍ତାରେ ହୁଇସିଲ ମାରି ଚାଲନ୍ତି । ଶାରୀରିକ ଅକ୍ଷମତା ମଧ୍ୟରେ ବାତଜ୍ୱର ଯୋଗୁଁ ସେ ସମୟେ ସମୟେ ଅସୁସ୍ଥ ହୋଇ ପୀଡା ପାଉଥିଲେ ।

ଆନନ୍ଦ ମିଶ୍ର – ସେ ନୟାଗଡ଼ ବାସିନ୍ଦା ଓ ପେଷାରେ ଜଣେ ଓକିଲ । ନୟାଗଡ଼ ବାରରେ ସେ କାର୍ଯ୍ୟରତ ଥିଲେ । ତାଙ୍କ ନାମରେ କିପରି ଓ କାହିଁକି ଆମ ଗାଁ ମଝିରେ ତାଙ୍କର ଗୋଟିଏ ଘରଡିହ ଥିଲା, ଜାଣିହୁଏନା । ସେ ମେଲାଡିହକୁ ପରବର୍ତ୍ତୀ ସମୟରେ ବାସୁଦେବ ମିଶ୍ର କିଣିଥିଲେ ।

ଶଶି ଖଲିଆ – ଏ ଦୁଇଜଣ କିଏ ? ଆମଗାଁ ସହ ଏମାନଙ୍କର ସମ୍ପର୍କ କ'ଣ ? ଶଶି ଭାଇନା ବିବାହ ବ୍ରତ କାର୍ଯ୍ୟରେ ଆସି ଯୋଗ ଦିଅନ୍ତି । ୰ଲିଙ୍ଗରାଜ ମିଶ୍ରଙ୍କ ଘରର ପୂର୍ବ ପଟ ମେଲାଡିହଟା ତାଙ୍କର ବୋଲି ସମସ୍ତେ କୁହନ୍ତି । ସିଏ

ଆମ ଗାଁର ମୂଳ ଅଧିବାସୀ ନୁହଁନ୍ତି । ଶଶୀ ଭାଇନାଙ୍କ ନନା ଉଛେଇ ନାଗଝରର ବନ୍ଧ କାମଚାଲିଥିବା ସମୟରେ ଆମ ଗାଁରେ ରହି ସେଠାରେ କାମ କରିବାକୁ ଆସିଥିଲେ । ଯୁବା ବୟସ । ଏଠାରେ ରହିବା ଭିତରେ ସିଏ ବୈଦ୍ୟନାଥ ମିଶ୍ରଙ୍କ ଭଉଣୀଙ୍କୁ ବିବାହ କଲେ ।

## ଜେନା ବୁଢା

ଆମେ ପିଲା ଥିଲାବେଳେ ଯେବେ ବି ଶ୍ରୀଲୋକନାଥ ମନ୍ଦିର, ସଉଦା ପାଇଁ ବଡକୁଟୁଣି କିମ୍ୱା କିଛି କାମରେ ଗାଁର ପୂର୍ବ ଦିଗକୁ ଯାଉ, ଦେଖୁ, ଜେନା ବୁଢା ତାଙ୍କ ଟୋପିଦାର ବନ୍ଧୁକ ଧରି ଦାଣ୍ଡ ବାରଣ୍ଡାରେ ବସିଛନ୍ତି । ଗୋରା ତକ୍ ତକ୍ ବାଙ୍ଗରା ଚେହରା ହସହସ ମୁହଁ, କେତେବେଳେ ଗୋଟେ କୋଟ ପିନ୍ଧିଥିବେ ତ କେତେବେଳେ ଧୋତି ଗାମୁଛା । ରାସ୍ତାରେ ଧାନ ପଟି ଶୁଖା ହୋଇଥାଏ, ଦଳେ ପାରା ମନ୍ଦିରରୁ ଆସି ପଟିରୁ ଧାନ ଖୁଣ୍ଟୁଥିବେ । ହଠାତ୍ ଆବାଜ ଆସିବ । କଅଣ ନା ଗୁଳି ଫୁଟିଲା । ଜେନାବୁଢା ଘରେ ଆଜି ମାଂସ ତରକାରୀ । ସେ ତାଙ୍କ ବନ୍ଧୁକରୁ ଗୁଳି ଫୁଟାଇ ପାରା ମାରିଛନ୍ତି । କେବେ ଗୁଳି ବାଜେତ କେବେ ଫୁସକି ଯାଏ । କହିବାର ତାତ୍ପର୍ଯ୍ୟ ହେଲା, ଜେନା ବୁଢା ଆମ ଅଞ୍ଚଳର ଜଣେ ଶିକାରୀ । ତାଙ୍କୁ ସମସ୍ତେ ବାଣୁଆ ସିଁ ଡାକନ୍ତି । ତାଙ୍କ ନା ହେଉଚି ଭାଗବତ ଜେନା । ଜାତିରେ ଗୋପାଳ । ତାଙ୍କ ପାଖରେ ବସିଲେ ସେ କେମିତି ମିରିଗ, ସମ୍ବର, ବାର୍ହା, ଚିତା ଆଦି ଶିକାର କରିଛନ୍ତି, ତାଙ୍କର ଅଭିଜ୍ଞତା ବଖାଣି ବସିବେ । ତାଙ୍କ ସହ ଯେଉଁମାନେ ପରିବାଣୁଆ ଯାଆନ୍ତି, ଜେନା ବୁଢା କଥା ଶୁଣି ମୁରୁକି ମୁରୁକି ହସୁଥାନ୍ତି । ସମୟ ପଡିଲେ ବାଣୁଆ ସିଂଙ୍କ କରାମତି କୁହନ୍ତି । ସେମାନଙ୍କ କହିବା ହେଲା, ଗୁଳି ଫୁଟାଇ ଜେନା ବୁଢା ବନ୍ଧୁକ ମାଡରେ ତଳେ ପଡିଯାନ୍ତି, ଏମାନେ ଭୟରେ ଛାନିଆ, କାରଣ ଶିକାର ମଲେ ତ ଠିକ୍, ଯଦି ଘାଇଲା (ଆହତ) ହେଲା, ଓଲଟି ଆକ୍ରମଣ କରିବ । ଜେନାବୁଢାଙ୍କ ଶିକାର ଅନୁଭୂତି ଶୁଣିବାକୁ ରୋଚକ ଲାଗେ ଓ ବହିରେ ପଢିଥିବା ଲିଭିଙ୍ଗଷ୍ଟୋନ୍ ହଂଟରଙ୍କ କଥା ମନେପଡେ ।

ଆମେ ପିଲାମାନେ ତାଙ୍କ ପାଖକୁ ଯିବାର ଅନ୍ୟ ଏକ କାରଣ ଥିଲା । ଆଜି ପରି ସେ ସମୟରେ ଲେଖିବାକୁ କଲମ ମିଳୁ ନଥିଲା। ଶଙ୍ଖଚିଲ କିମ୍ବା ମୟୂର ପକ୍ଷୀରେ ଆମେ କଲମ ତିଆରି କରି ଲେଖାଲେଖି କରୁଥିଲୁ । ତେଣୁ ଜେନାବୁଢାଙ୍କ ପାଖକୁ ଯାଇ ତାଙ୍କ ଶିକାର ଅଭିଜ୍ଞତା ଶୁଣିଲେ ହିଁ ସେ ଆମକୁ ପକ୍ଷୀ ଦେଉଥିଲେ। ସେ ପକ୍ଷୀଟିକୁ କବିରାଜଙ୍କ ପାଖକୁ ଆଣିଲେ, ସେ ତା'ର ମୁନ ଠିକ୍ ରୂପେ ବନେଇ ଦେଉଥିଲେ । ଭାଗବତ ଜେନାଙ୍କର ଦୁଇ ପୁଅ । ଶୁକୁରିଆ ଓ ଝୁଲିଆ ।

## ବାଣୁଆ ସିଂ

ନାମରେ କି ଥାଏ     କର୍ମ ଶ୍ରେୟ ହୁଏ
ସମୟ ହିଁ ତାହା କହେ।
ଭଲ କାମ କଲେ     ଦୁନିଆ ଜାଣଇ
ନାମ ତା' ଅମର ରହେ।।

ନାମ ଭାଗବତ     ଡାକ ଜେନାବୁଢା
ପାରିଧିରେ ସିଦ୍ଧହସ୍ତ।
ଟୋପି ବନ୍ଧୁକରେ     ଜନ୍ତୁଙ୍କୁ ଗୋଡାଇ
କରିଥାନ୍ତି ଭୀତତ୍ରସ୍ତ।।

ବୟସ ବଢିଲା     ସ୍ଥବୀର ଶରୀର
ପାରିଧିକୁ ଗଲେ ନାହିଁ।
ବନ୍ଧୁକକୁ ଧରି     ଦାଣ୍ଡରେ ବସିଲେ
ନିଜ ଅନୁଭୂତି କହି।।

ଦାଣ୍ଡ ଓଳିତଳେ     ଖଜୁରୀ ପଟିରେ
ଧାନ ଯେବେ ଶୁଖା ହୁଏ।
କାହୁଁ ପାରାଦଳ     ଆସି ବସିଯାନ୍ତି
ଖୁଣ୍ଟି ଖାଆନ୍ତି ନିର୍ଭୟେ।।

ଜେନାଙ୍କର ଆଖି ପଡିଯାଏ ଯେବେ
ବନ୍ଧୁକରେ ଦାରୁ ଭରି ।
ଫୁଟାଇ ଗୁଳିକୁ ଚାହିଁ ରହିଥାନ୍ତି
କେତେ ପାରା ଗଲେ ମରି ।।

ଗୁଳି ଶବ୍ଦ ଶୁଣି ଲୋକେ ଆଚମ୍ବିତ
କେହି ମଜାରେ କୁହନ୍ତି ।
ବାଣୁଆସିଂହଙ୍କ ଘରେ ଆଜି ଭୋଜି
ଶହେ ପାରା ମରିଛନ୍ତି ।।

ପାଖରେ ବସିଲେ ବଖାଣନ୍ତି ଜେନା
ଯୁବାବେଳ ଅନୁଭୂତି ।
ମିରିଗ ସମ୍ବର ବାରହା ଗୟଳ
କିପରି ସେ ମାରିଛନ୍ତି ।।

ପିଲାମାନେ ତାଙ୍କ କାରନାମା ଶୁଣି
ଆଖି ତରାଟି ଚାହାନ୍ତି ।
ଏପରି ବାଣୁଆ ଗାଆଁରେ ଅଛନ୍ତି
କୁହାକୁହି ହେଉଥାନ୍ତି ।।

ପରି ବାଣୁଆଏ ଶୁଣି ତାଙ୍କ କଥା
ବହେ ମୁରୁକି ହସନ୍ତି ।
ଭୀମ ବଳ ପରା କୁନ୍ତି ଜାଣିଥାନ୍ତି
ଜାଣୁ ଜେନା କରାମତି ।।

## ହାଡିମା

ହାଡିମା କଥା ଭାବିଲେ ମନରେ ନାନା ପ୍ରଶ୍ନ ଆସେ । ପିଲାଦିନରୁ ସେଇ ଗୋଟିଏ ପ୍ରଶ୍ନ, ଇଏ କିଏ ? ଲୋକା କକେଇଙ୍କ ଘରେ ସେ କାହିଁକି ରହୁଚି ? ସେ

କ'ଣ ତାଙ୍କର ଜ୍ଞାତି ନା ବନ୍ଧୁ ? ତା'ର ଏ ଘର ସହିତ କି ସମ୍ପର୍କ ? ସମସ୍ତେ ଜାଣନ୍ତି ସିଏ ଲୋକନାଥ ମିଶ୍ରଙ୍କ ଘରର ସଦସ୍ୟ, କେବଳ ସଦସ୍ୟ ନୁହେଁ, ମୁରବୀ । ଗୋରା ତକ୍‌ତକ୍, ଡେଙ୍ଗୀ, ଖର୍ବ ଚେହେରା, ଢପ୍ ଢପ୍ ଚାଲ ହାଡିମାର ବିଶେଷତ୍ୱ ଓ ସିଏ ଜଣେ ପୁରୁଷ ପରି ସବୁ କାମ କରିବାରେ ପାରଙ୍ଗମ । ଥକିବାର ନାହିଁ । ମିଶ୍ରଙ୍କର ଦୁର୍ବଳ ଆର୍ଥିକ ସ୍ଥିତିକୁ ସେ ହିଁ ସମ୍ଭାଳି ନିଏ । ମିଶ୍ରଙ୍କ ଘର ଚଳାଇବା ସହ ଗାଁର ଅନ୍ୟ ମାନଙ୍କ କାମରେ ବି ସେ ସାହାଯ୍ୟ କରିଥାଏ । ଆଖପାଖ ଗାଁକୁ କେହି ଯଦି ଭାର ପଠାଇବାର ଅଛି, ତେବେ ହାଡିମାକୁ ଡାକରା ପଡେ । ସିଏ ବିଜୁଳି ବେଗରେ ଯିବା ଆସିବା କରି କାମଟି ସୁଚାରୁ ରୂପେ ସମ୍ପନ୍ନ କରି ଫେରିଆସେ । ସମସ୍ତେ ତା'ପ୍ରତି ଖୁସି କାରଣ ଭରସା ଯୋଗ୍ୟା ମହିଳା ।

ତଥାପି ଅନେକ ପ୍ରଶ୍ନ । ସେ ମିଶ୍ରଙ୍କ ଘରେ କାହିଁକି ? ଏତେ ପ୍ରଶ୍ନର ଗୋଟିଏ ଉତ୍ତର, ସମ୍ପର୍କରେ ସେ ଲୋକନାଥ ମିଶ୍ରଙ୍କ ଘରର କେବଳ ସଦସ୍ୟ ନୁହେଁ, ମୁଖ୍ୟ ସଦସ୍ୟ। ଗାଁମାନଙ୍କରେ ଏମିତି ସମ୍ପର୍କ ବା ଦୃଷ୍ଟାନ୍ତ ଅନେକ ଅଛି । ସେ କେଉଁଠାରୁ ଆସିଲା, କେମିତି ଆସିଲା, ଏ ଘରେ କେମିତି, ସମ୍ପର୍କ ଏତେ ଘନିଷ୍ଠ କିପରି ହେଲା, ସେ ପ୍ରଶ୍ନ ଯଥାର୍ଥ ନୁହେଁ, କାରଣ ବର୍ତ୍ତମାନର ପରିପ୍ରେକ୍ଷୀରେ, ସେ ଘରର ସର୍ବେସର୍ବା ।

ଦେଖିବାକୁ ଗଲେ, ସେ ବଡକୁଟୁଣୀର ମୂଳ ବାସିନ୍ଦା । ଆମେ ଦେଖିଲା ସମୟରେ ସେ ତା'ର ଝିଅ ହାଡିସହ ମିଶ୍ରଙ୍କ ଘରେ ରହି ଆସୁଚି । ଖୁବ କମ୍ ବୟସରେ ଝିଅଟି ରୋଗାକ୍ରାନ୍ତ ହୋଇ ଅକାଳରେ ମୃତ୍ୟୁ ବରଣ କରିବାରୁ, ନିଃସନ୍ତାନ ଜୀବନର ପୀଡାକୁ ଲାଘବ କରିବା ପାଇଁ ସେ ମିଶ୍ରଙ୍କ ପ୍ରଥମ ସନ୍ତାନ ସୁରିଆ ପ୍ରତି ଆକର୍ଷିତ ହୋଇ ସମ୍ପର୍କକୁ ଆହୁରି ନିବିଡ କରିନେଲା । ସୁରିଆ ତାକୁ ବା ଡାକେ ଓ ସବୁ ଅଳି ଝଳି ତା' ବା ପାଖରେ ହିଁ କରେ । ହାଡିମା ବି ନିଜ ମା' ପରି ତା'ର ସବୁ ପ୍ରକାର ଯତ୍ନ ନିଏ । ସୁରିଆ ହସିଲେ ସେ ହସେ ଓ କାନ୍ଦିଲେ ଦୁଃଖରେ ଭାଙ୍ଗିପଡେ । ସୁରିଆର କିଛି ଅସୁବିଧା ହେଲେ, ନା ମିଶ୍ରେ କିମ୍ବା ତା'ର ବୋଉ, ହାଡିମାହିଁ ତା'ର ସମାଧାନ କରେ ।

ମିଶ୍ର ମହାଶୟ ଜଣେ ଅଭାବୀ ପକ୍ଷ ଲୋକ । ସେମିତି କିଛି ରୋଜଗାର ନଥିଲା । ଜମିବାଡି ଅଳ୍ପ କିଛି ଥିଲା, ସେଥିରୁ ଯାହା ଆଦାୟ ହୁଏ, ବର୍ଷସାରା ଘର

ଚଳାଇବା କଷ୍ଟ । ତେଣୁ ହାଡିମା ତାଙ୍କ ଘର ପାଇଁ ବଡ ଆଶା ଓ ସାହାରା । ଘରର ସବୁ ଅଭାବ ଓ ଅନାଟନ ମେଣ୍ଟାଇବାକୁ ହାଡିମା ହିଁ ବାହାରି ଆସେ । ସମସ୍ତେ ତାକୁ ହିଁ ବିଶ୍ୱାସ କରନ୍ତି ଓ ସାହାଯ୍ୟ କରିବା ସହ ଧାର ଉଧାର ତାକୁ ହିଁ ଦିଅନ୍ତି । ତେଣୁ ସେ ମିଶ୍ର ପରିବାରର ମୁଖ୍ୟ ସଦସ୍ୟ କହିଲେ ଭୁଲ ହେବନି ।

## ପୁନାମା

ପୁନାମା, ଜାତିରେ ଗୁଡିଆ । ତା'ର ମୁଢି ଅଞ୍ଚଳପ୍ରସିଦ୍ଧ । ପୁଅ ଝିଅର ସଂସାର, ସଦା ଖୁସି । ମୋତେ ଭାରି ଭଲପାଏ । ଯେବେ ବି ଦାଣ୍ଡରେ ଯାଉଥିବାର ଦେଖିବ, ଡାକିବ ଏ ବାବାଜୀ ପିଲା ! କୁଆଡେ ଯାଉଚୁ ? ଆସୁନୁ ଆମ ଘର ଆଡେ । ଯଦିଓ ସେ ସ୍ନେହରେ ମୋତେ ଡାକେ, ମୋତେ କିନ୍ତୁ ଭାରି ଅଡୁଆ ଲାଗେ । ତେଣୁ, ଯେବେ ବି ସେ ବାଟଦେଇ ଯିବାକୁ ହୁଏ, ପ୍ରଥମେ ମୁଁ ଆଖି ପକାଏ ସେ ଦାଣ୍ଡରେ ଅଛି ନା ନାହିଁ । ନଥିଲେ ବି ଠିକ୍ ମୋ' ଯିବା ବେଳକୁ ସିଏ ଘରୁ ବାହାରି ଆସି ଦାଣ୍ଡରେ ଠିଆ । କେମିତି ବା ନଆସିବ ? ଘର ବୋଲିତ ଦୁଇ ବଖରା, ଦୁଇ ପୁଅ, ବାହା ହୋଇ ଗଲେଣି, ଘରେ ଜାଗା ନାହିଁ । କନ୍ଦିରେ ତା'ର କାରବାର, ସେଇ ବାଟ ଦେଇ ପୁଣି ଦିଅର/ ଦେଢଶୁରଘରର ଅନ୍ୟ ସଦସ୍ୟ ପଛ ପଟକୁ ଯା'ଆସ କରନ୍ତି । ଘରେ ବୋହୂମାନେ ସବୁ କାମ ନିର୍ବାହ କରନ୍ତି । ପୁନାମାକୁ ସେ ଦାୟିତ୍ୱ ନାହିଁ, କେବଳ ବାହାର କାମ । ଦାଣ୍ଡ ବରଣ୍ଡାରୁ ଘର ଭିତରକୁ ଯିବାକୁ ଯେଉଁ କନ୍ଦି, ସେଇଠି ତା'ର ବସା । ସେଇଠି ଚୁଲି, ମୁଢି ଭଜା ଓ ବେପାର । ତା'ର ମୁଢି ଓ ମୁଆଁ ଗାଁରେ ଡାକ ବଜା, ଖାଲି ଆମ ଗାଁ ନୁହେଁ, ପାଖ ଗାଁ କୁଟୁଣୀରେ ବି । ସେ କୁଟୁଣି ଗାଁ ଭୋଟର କିନ୍ତୁ ଆମ ଗାଁ ବାସିନ୍ଦା । ମୁଢି ବେପାର ସହିତ ପାଣି ଆଣିବା, ଗୁହାଳ ଗୋବର ଇତ୍ୟାଦି ସବୁ ଦାଣ୍ଡ କାମ କରୁଥିବାରୁ ସିଏ ସବୁବେଳେ ଦାଣ୍ଡରେ, ତାକୁ ଆଡ ହେବା ସମ୍ଭବ ନୁହେଁ । ମୋତେ ତ ଦିନରେ କେତେଥର ସେପଟେ ଯିବାକୁ ହୁଏ, କାରଣ ମୁହିଁ ମୁଢି ଆଣିବାକୁ ଯାଏ ଓ ମୋ' ନାନୀଘର ତା' ଘର ସାମନାରେ । ତେବେ ତା'ର ସେ ବାବାଜୀ ପିଲା ସମ୍ବୋଧନକୁ ମୁଁ ସହଜରେ ଗ୍ରହଣ କରିପାରୁନଥିଲି କି ବିରୋଧ ବି କରିପାରୁନଥିଲି, କାରଣ ଛୋଟ ବୟସ ଓ ସେ ଜଣେ ଭଲ ମଣିଷ । ମନରେ

କିନ୍ତୁ ସେଇ ପ୍ରଶ୍ନ, ମୁଁ ବାବାଜୀ ପିଲା ହେଲି କେମିତି ? ମୋର ବୋଉ, ନନା, ନାନି ସମସ୍ତେ ତ ଅଛନ୍ତି । ଦିନେ ସାହସ ଜୁଟାଇ ବୋଉକୁ ପଚାରିବାରୁ ସେ ସ୍ମିତ ହସି ମୋତେ କୋଳରେ ବସାଇଲା ଓ କହିଲା ତୁ କାହିଁକି ବାବାଜୀ ପିଲା ହେବୁ, ତୁ ତ ମୋର ପୁଅ, କଥା କ'ଣକି, ତୋର ନନା ବର୍ମା ଯାଇଥିଲେ, ସେଠାରେ ସେ କେତେବର୍ଷ ରହିଗଲେ ଓ ତାଙ୍କ ଖୋଜ ଖବର କିଛି ମିଳିଲା ନାହିଁ । ଏ ଗାଁର ସମସ୍ତେ ଭାବିନେଲେ ଯେ ସେ ଆଉ ଫେରିବେ ନାହିଁ । ସେ ବଂଚିଛନ୍ତିନା କ'ଣ, ସେ ଖବର ମଧ୍ୟ ମିଳିଲା ନାହିଁ । ସେ ସମୟରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଲାଗିରହିଥିଲା । ତେଣୁ ଆମ ପରିବାରରେ ଦୁଃଖର ଛାୟା ଖେଳିଗଲା । ମୁଁ ତୋ' ନନାଙ୍କ ଫେରିବା ବାଟକୁ ଚାହିଁ ରହିଥାଏ ଓ ଈଶ୍ୱରଙ୍କୁ ପ୍ରାର୍ଥନା କରୁଥାଏ ଯେ ତାଙ୍କୁ ଭଲରେ ରଖିଥାଅ । ତୋର ନାନିର ମୁହଁକୁ ଚାହିଁ ମନରେ ଦୁଃଖକୁ ଚାପି ଦିନ କାଟୁଥାଏ । ହଠାତ୍ ଦିନେ ତୋର ନାନା ଅପ୍ରତ୍ୟାଶିତ ଆସି ଗାଁରେ ପହଞ୍ଚିଲେ । ଯୁଦ୍ଧର ଭୟାବହତା ଦେଖିବାପରେ ସେ ତାଙ୍କର କେତେଜଣ ସାଥିଙ୍କ ସହ ଲୁଚି ଲୁଚି ବଣ ପାହାଡ ଦେଇ ସମୁଦ୍ର ପଥରେ ଡଙ୍ଗାରେ କଲିକତା ଦେଇ ଗାଁକୁ ଫେରିଆସିଲେ । ତାଙ୍କର ଏଇ ଦେଶାନ୍ତର ଓ ଦୀର୍ଘ ଦିନର ଅନୁପସ୍ଥିତି ସମସ୍ତଙ୍କୁ ସନ୍ଦେହ ଘେରରେ ରଖିଥିଲା । ସେ ଫେରିବା ପରେ ତୁ ଜନ୍ମ ନେଲୁ । ପୁନାମାର ଯେହେତୁ ଆମ ଘର ସହ ଭଲ ସମ୍ପର୍କ, ତୋର ଆସିବା ଖୁସିରେ ସେ ତୋତେ ବାବାଜୀ ପିଲା କହୁଚି । ତା' କଥା ତୁ ଧରିବୁନି, ବରଂ ଖୁସି ହେବୁ । ତା'ପରେ ମୋର ପୁନାମା ପ୍ରତି ସମ୍ମାନ ବଢିଗଲା ।

ମୋ' ନନାଙ୍କ ପ୍ରତି ପୁନାମାର ଗଭୀର ଭକ୍ତି ଓ ସମ୍ମାନ । ନନା ସକାଳେ ପୂଜା ଥାଳିଧରି ତା' ଘର ଦେଇ ଶ୍ରୀଲୋକନାଥ ମନ୍ଦିର ଯିବା ବାଟରେ ସିଏ ରାସ୍ତାରେ କିଛିନା କିଛି କାମ କରୁଥାଏ । ନନାଙ୍କ ମୁଖନିଃଶୃତ ଶ୍ଳୋକ ଶୁଣି ଆଡ ହୋଇଯାଏ ଓ ତା'ର ମୁହଁରେ ଭକ୍ତିପୂର୍ଣ୍ଣ ନିବେଦନର ଛିଟା ପରିଲକ୍ଷିତ ହୁଏ ।

ପୁନାମାର ବଡ ଝିଅର ନାଁ ପୁନା ତେଣୁ ଆମେ ପୁନାମା ଡାକୁ । ଦୁଇ ପୁଅ, ଗୁଣ୍ଡିଚା ଓ ଟୁଙ୍ଗା । ଗୁଣ୍ଡିଚା ନିଃସନ୍ତାନ ହେତୁ ଟୁଙ୍ଗାର ପୁଅକୁ ପୋଷ୍ୟ କଲା । ସେ ପରିବାରର ସମସ୍ତେ ଅମାୟିକ ଓ ସ୍ନେହୀ ।

## ମଲ୍ଲିକା ମା

ବୋଉଙ୍କ ଠାରୁ ନନାଙ୍କ ରେଙ୍ଗୁନ ଯିବା ବିଷୟ ଶୁଣିବାପରେ ମୋର ସେ ବିଷୟରେ ଅଧିକ ଜାଣିବାକୁ ଆଗ୍ରହ ବଢ଼ିଲା । ଶୁଣିଲି, ଆମ ଗାଁର ଅନ୍ୟ ଯେଉଁମାନେ ରେଙ୍ଗୁନ ଯାଇଥିଲେ, ସେମାନଙ୍କ ମଧ୍ୟରେ ଥିଲେ, ୰ଚିନ୍ତାମଣି ମହାପାତ୍ର, ବୀର ସେଠି, ପଂଚୁ ସେଠୀ ଓ ମଲ୍ଲିକା ବାପା । ଯଦିଓ ନନା, ଚିନ୍ତାମଣି ମହାପାତ୍ର ଓ ବୀର ସେଠି କିଛିବର୍ଷ ବ୍ୟବଧାନ ପରେ ଗାଁକୁ ଫେରିଆସିଲେ, ମଲ୍ଲିକା ବାପା କିନ୍ତୁ ବହୁ ବର୍ଷ ଧରି ରେଙ୍ଗୁନରେ ରହିଗଲେ । ଖବର ବି ଦେଲେ ନାହିଁ । ମଲ୍ଲିକା ବାପା ରେଙ୍ଗୁନ ଯିବା କଥା ମୁଁ ଆଗରୁ ଜାଣି ନଥିଲି । ମୁଁ ମଲ୍ଲିକା ମା'କୁ ଯେବେ ବି ଦେଖେ ଭାବେ ଯେ, ତା'ର ସ୍ୱାମୀ ନାହିଁ । କାରଣ ହାତରେ ରସ ଖଡ୍ଡୁ, ଦେହରେ ଧଳା ଲୁଗା ଓ ଅନ୍ୟ ପରିପାଟୀ, ସେ ସବୁ ତା'ର ବୈଧବ୍ୟ ଅବସ୍ଥାର ସୂଚନା ଦିଏ । ମଥାର ସିନ୍ଦୁର ଯାହାକି ସଧବାର ଅନ୍ୟ ଏକ ଚିହ୍ନ, ତାହା ମୁଁ କେବେ ଦେଖିନାହିଁ । ତାଙ୍କ ପଡୋଶୀ ମୁଳିମା' ଓ ଲୋକା ମା'ଙ୍କ ପରି ତା'ର ଚାଲିଚଳଣ ଓ ଢଙ୍ଗଢାଙ୍ଗ ସମାନ ଦିଶେ । ତା'ର ଦୁଇ ଝିଅ ମଲ୍ଲିକା ଓ ମନ୍ଦ । ଜାତିରେ ଗୋପାଳ । ବରସାହିର ମୂଳ ବାସିନ୍ଦା । ତା'ର ସ୍ୱାମୀ ରେଙ୍ଗୁନ ଯିବା, ଦୀର୍ଘଦିନ ଧରି ନଫେରିବା କିମ୍ବା ସମ୍ବାଦ ନଦେବା ଇତ୍ୟାଦି ଘଟଣା ଜାଣିବା ପରେ ତା'ର ମନରେ କ'ଣ ପ୍ରଭାବ ପଡୁଥିବ, ସେକଥା ମୋ'ମନରେ ସର୍ବଦା ଉଦ୍‌ବେଳିତ ହୁଏ, କାରଣ ମୋର ବୋଉ ମଧ୍ୟ ସେ ପ୍ରକାର ପରିସ୍ଥିତି ଦେଇ ଗତିକରିଚି । ମଲ୍ଲିକା ମା'ର ସମ୍ପତ୍ତି କହିଲେ ଘର ଖଣ୍ଡିଏ । ଚଳିବାକୁ ସମ୍ବଳ ସେମିତି କିଛି ନଥିଲା । ସ୍ୱାମୀଙ୍କ ଅନୁପସ୍ଥିତିରେ ଭାଗ୍ୟକୁ ଆଦରି ଦୁଇ ଝିଅଙ୍କ ସହ ସ୍ୱାମୀଙ୍କ ଫେରିବା ବାଟକୁ ଚାହିଁ ଚାହିଁ ଯୌବନ ଅତିକ୍ରାନ୍ତ ହୋଇଗଲା । ଗାଁର ଅନ୍ୟ ଯେଉଁମାନେ ରେଙ୍ଗୁନ ଯାଇଥିଲେ ଫେରି ଆସିଲେ ସିନା, ତା'ର ସ୍ୱାମୀ ଫେରିଲେ ନାହିଁ । ତଥାପି ଭାଙ୍ଗିନଯାଇ ଦୁଃଖକୁ ମନରେ ଚାପିରଖିଲା ଓ ଝିଅ ଦୁଇଟିର ଭବିଷ୍ୟତ ଚିନ୍ତାକରି ନିଜ କର୍ତ୍ତବ୍ୟ ସମ୍ପାଦନା କରିବାରେ ଲାଗିପଡିଲା । ମୂଲ ଲାଗି ଘର ଚଳାଇଲା ଓ ଝିଅ ଦୁଇଟିଙ୍କୁ ଭଲରେ ବିବାହ ଦେଲା । ସବୁ ଠିକ୍ ଚାଲିଥିବା ଅବସ୍ଥାରେ ପରିଣତ ବୟସରେ ସ୍ୱାମୀଙ୍କର ଆବିର୍ଭାବ ତାକୁ ଓ ଗାଁର ସମସ୍ତଙ୍କୁ ଚକିତ କରିଦେଲା । ସିଏ ଭାବବିହ୍ୱଳ ହୋଇ ସ୍ୱାମୀଙ୍କ ପୁନଃମିଳନକୁ ସ୍ୱାଗତ

କରିବା ପରେ ଦୁହେଁ ଖୁସିରେ ଘର ସଂସାର କଲେ ଅବଶ୍ୟ, କିନ୍ତୁ ବିଧିର ବିଧାନ ଭିନ୍ନ । ସେ ସୁଖ ସଂସାର ବେଶିଦିନ ତିଷ୍ଠିଲା ନାହିଁ । ସ୍ୱାମୀର ମୃତ୍ୟୁ ଘଟିଲା, ମଲ୍ଲିକା ମା' ଯେଉଁ ବିଧବାକୁ ସେଇ ବିଧବା । ତା'ର କିଛିଦିନ ପରେ ମଲ୍ଲିକା ମା' ବି ଆଉ ପାରିକୁ ଚାଲିଗଲା । ସେମାନଙ୍କ ପାଳିତ ପୁଅ (ନାତି) ସେ ଘରର ଦାୟାଦ ହୋଇ ରହିଲା ।

## ଚିଂଚିମା

ନାମରୁ ଜଣାପଡେ ତା'ର ଝିଅର ନାଁ ଚିଂଚି । କିନ୍ତୁ ଆମେ କେବେ ତାକୁ ଦେଖିନୁ । ଚିଂଚିମା ଆମ ଗାଁର ଏକ ନିଆରା ମହିଳା କହିଲେ ଭୁଲ ହେବନି । କେଉଁଠୁ ଆସିଲା, କେଉଁଠି ରହୁଚି, ତାକୁ ହିଁ ଜଣାଥିଲା । ମୁଁ ଜାଣିବାରେ ସେ କେତେବର୍ଷ ଆମ ଦେଠେଇ ଘରର ଏକ କୋଣରେ ରହେ । କଳା ମଚମଚ ଅଙ୍ଗ ଉଚ୍ଚର ବୁଢି, ହାତରେ ବାଡି ଧରି ଠୁକୁର ଠୁକୁର ଚାଲିରେ ଏଘରୁ ସେ ଘରକୁ ଯାଇ ଦଣ୍ଡକରେ ପୁରା ଗାଁ ବୁଲି ଆସେ । ସେ ବୟସରେ କେବଳ ଆମ ଗାଁ ଓ କୁଟୁଣୀ ନୁହଁ, ଗୋଛା, ସିମିଳି, ମଶାଣିଝୋଲା, ବେତୁଲି, ଧୂଆଁନଳୀଆଦି ଦୂର ଆଦିବାସୀ ଗାଁକୁ ଯାଇ କନ୍ଧ ଲୋକଙ୍କ ସହ ସମ୍ପର୍କ ରଖିଥାଏ । କନ୍ଧ ମାନଙ୍କୁ ସେମାନଙ୍କ ପ୍ରିୟ ଖଜାପିଠା, ମୁଆଁ ଉଖୁଡା, ଚୁଡା ମୁଢି ଦେଇ ତାଙ୍କଠାରୁ ପ୍ରତିବଦଳରେ ଆମ୍ବ, ପଣସ, ମକା, ତେନ୍ତୁଳି, ଲେମ୍ବୁ ଆଦି ଅନେକ ଜଙ୍ଗଲଜାତ ଦ୍ରବ୍ୟ ଆଣେ । ସେଇ ବେପାରରୁ ଯାହାକିଛି ପାଏ, ନିଜ ଗୁଜୁରାଣ ମେଂଟିଯାଏ । ଚିଂଚିମା ସଦା ଖୁସି, ଓ କର୍ମଠ । କେବେବି ମନରେ ଦୁଃଖ କିମ୍ବା ବିଷର୍ଣ୍ଣତା ନଥାଏ । ତା' ବିଷୟରେ ଜାଣିବାକୁ ଚାହିଁଲେ ବି ଜାଣିହୁଏନା । ସେ, ତା'ର କାମ ଓ ତା'ର ଅନ୍ୟକୁ ସାହାଯ୍ୟ କରିବାର ମନୋବୃତ୍ତି, ବାସ୍ ଏତିକି । ଆମ ଘର ସହ ତା'ର ସମ୍ପର୍କ ନିବିଡ, ମୁଁ ପିଲାବେଳେ ତା'ସହ ଆମ୍ବ, ପଣସ ଆଣିବାକୁ ଆଦିବାସୀ ଗାଁକୁ କେତେଥର ଯାଇଥିଲି ।

## କାହ୍ନୁ ସାହୁ

ଗାଁଟି ଛୋଟ ହେଉ ବରଂ, କିନ୍ତୁ ସୁଖରେ ଜୀବନଯାପନ କରିବା ପାଇଁ ଭିନ୍ନଭିନ୍ନ ବର୍ଗର ପରିବାର ଏକତ୍ର ବାସ କରିବା ନିହାତିଜରୁରୀ । କାରଣ ଦୈନନ୍ଦିନ

ଆବଶ୍ୟକୀୟ ଜିନିଷ ହାତ ପାଖରେ ନ ଥିଲେ, ଲୋକେ ହନ୍ତସନ୍ତ ହେବେ । ଅନ୍ୟ ଗାଁକୁ ଯାଇ ସେସବୁ ଆଣିବାରେ ସମୟ ଅପଚୟ ହେବା ସହ ଅସମୟରେ ନ ମିଳିଲେ ବହୁ ବିଘ୍ନ ଘଟିଯାଏ । ସେସବୁକୁ ଆଖି ଆଗରେ ରଖି ସେ ସମୟର ମୂଳ ଗ୍ରାମବାସୀମାନେ ମାଳି, ପୂଜାରୀ, ଗଉଡ, ଗୁଡିଆ, ଭଣ୍ଡାରୀ, ଧୋବା, ପରିବାର ମାନଙ୍କୁ ସାଙ୍ଗରେ ନେଇ ଏ ବସତିକୁ ଗଢିଥିଲେ । ସେହି ଅନୁକ୍ରମେ, କାହ୍ନୁ ସାହୁଙ୍କୁ ନରେନ୍ଦ୍ରପୁର ଗ୍ରାମରୁ ଆଣି ଆମ ଗାଁରେ ଯୋଡିବା ଏକ କୌତୁହଳପୂର୍ଣ୍ଣ ଘଟଣା କହିଲେ ଅତ୍ୟୁକ୍ତି ହେବନାହିଁ । ୰ଲୋକନାଥ ମିଶ୍ରଙ୍କ ~~ଝିଅ ଆଶପୁରରେ ବିବାହ କରିଥିଲେ~~ ଶାଶୁଘର ଚଳଣି ଅନୁଯାୟୀ ଅନିଚ୍ଛା ସତ୍ତ୍ୱେ, ଅନେକ ସମୟରେ ନିଜକୁ ସଂଜତ କରିବାକୁ ପଡିଥାଏ । ସେ ଝିଅର ମୁଣ୍ଡର କେଶ ଘନ ଓ ଲମ୍ବା । ତେଣୁ ନିଜ କେଶ ବିନ୍ୟାସ କରିବା ପାଇଁ ସବୁବେଳେ ସେ ତତ୍ପର ଥାଏ । କାରଣ ଲମ୍ବା କେଶକୁ ଖୋଲା ଛାଡିବା ନାରୀମାନଙ୍କ ପ୍ରତି ଅଶୋଭନୀୟ ମଣାଯାଏ । ତେବେ ତା'ପାଇଁ ସବୁଦିନ ତେଲ ଦରକାର ମଧ୍ୟ ହୁଏ । ଏକଦା ଲୋକନାଥ ମିଶ୍ର' ଝିଅ ଘରେ ଥିବା ସମୟରେ ଝିଅ ପ୍ରତି ଶ୍ୱଶୁରଙ୍କ କଟାକ୍ଷ ଉକ୍ତି କାନରେ ପଡିବାରୁ ଭାରି ବ୍ୟଥା ପାଇଲେ । "ନନାଙ୍କୁ କହି ଜଣେ ତେଲି ବ୍ୟବସ୍ଥା କରିଦେଲେ, ଯେତେ ଇଚ୍ଛା ସେତେ ତେଲ ଲଗେଇ ପାରିବ" ।

ତେଣୁ ~~[illegible]~~ ଝିଅଘରୁ ଫେରିବା ପରେ ଜଣେ ତେଲି ବ୍ୟବସାୟୀ ଗାଁରେ ରଖିବା ପାଇଁ ମନସ୍ଥ କରି କାହ୍ନୁସାହୁଙ୍କ ସହ ଯୋଗାଯୋଗ କରି ଆଣିଲେ ।

ମୋ' ପିଲାବେଳୁ ମୁଁ କାହ୍ନୁ ସାହୁଙ୍କୁ ଆମ ଗାଁର ବାସିନ୍ଦା ହିସାବରେ ଦେଖି ଆସିଚି । ସାଧାରଣ ଚେହେରା, କଳା ରଙ୍ଗ, ପେଟଟା ଅସ୍ୱାଭାବିକ ବଡ, ମୁଣ୍ଡରେ ତେଲ ମାଖି ସୁନ୍ଦର ଠାଣିରେ କୁଣ୍ଡାଇ ଥାଆନ୍ତି । ସିଏ ସାମାନ୍ୟ ବଙ୍କେଇ ଚାଲନ୍ତି । ତାଙ୍କ ତେଲଘଣା ଠିକ୍ ତ ସିଏ ଠିକ୍ । ଦାଣ୍ଡଘର ପରେ ଅଗଣାରେ ତେଲ ଘଣା । ରାତି ପାହିଲେ ଗୋଟେ ବଳଦ ଯୋଚି ଘଣା ବୁଲାଉ ଥିବେ ଓ ବାଡି ଖଣ୍ଡେ ଧରି ଘଣା ଭିତରେ ପେଡୁଥିବା ମଂଜିକୁ (ରାଶି, ସୋରିଷ, ବାଦାମ) ବାରମ୍ବାର ଓଲଟ ପାଲଟ କରୁଥିବେ । ସେପରି କରିବାର କାରଣ ହେଲା, ମଂଜିରୁ ଯେପରି ପୁରା ମାତ୍ରାରେ ତେଲ ନିଗିଡି ଯିବ । ଆମେ ପିଲାମାନେ ବଡ ଆଗ୍ରହରେ ଘଣା ପାଖର ଠିଆ ହୋଇ ଚାହୁଁଥିବୁ କେତେବେଳେ ସେ ଆମକୁ

ଘଣାରେ ବସିବାକୁ ସୁଯୋଗ ଦେବେ। ଘଣାରେ ଦୁଇ ଚାରିଥର ବୁଲି ଗଲେ ଭାରି ମଜା ଲାଗେ ।

ସେ ବଡ ଅମାୟିକ ମଣିଷ । ତାଙ୍କର ଗୋଟିଏ ପୁଅ, ନାଁ ନିଧି । ଏକମାତ୍ର ପୁଅ ହେତୁ, ଭାରି ସ୍ନେହରେ ବଢିଥାଏ । କାହ୍ନୁସାହୁ ପୁଅ ଉପରେ କୌଣସି କାମର ଚାପ ଦିଅନ୍ତି ନାହିଁ ।ଏପରିକି ପୁଅ ଯୁବା ବୟସରେ ପଦାର୍ପଣ କରି ମଧ୍ୟ ବାପାଙ୍କ ବୋଝ ନ ଉତାରି ଉଦାସିଆ ରହିବା ଫଳରେ କାହ୍ନୁ ସାହୁ ଅନେକ ସମୟରେ ସମାଲୋଚନାର ପାତ୍ର ହୋଇ ଅପଦସ୍ତ ହୋଇଛନ୍ତି । ଏକ ସମୟରେ ନିଧି ସାହୁ କୌଣସି କାରଣବଶତଃ ପାଗଳ ପରି ବ୍ୟବହାର କରିବାରୁ ଗାଁରୁ ବହୁ ଦିନ ଧରି ବାସନ୍ଦ ହୋଇଥିଲେ ।

## ଭାଗବତ (ମହରିଗି) ସ୍ୱାଇଁ

ଚାଷୀ ପରିବାରରେ ଜନ୍ମ ନେଇବି ସିଏ ଜଣେ ସଫଳ ବଢେଇ ହୋଇପାରିଥିଲେ । ଚାଷକାମ ପାଇଁ ଯେତେ ସରଂଜାମ ଦରକାରହୁଏ, ତା'ମଧ୍ୟରେ ଲଙ୍ଗଳ ହିଁ ମୁଖ୍ୟ । ବହୁ ପୂର୍ବରୁ, ଗାଁରେ ବଢେଇ ନଥିଲା ସମୟରେ, ମହରିଗି ସ୍ୱାଇଁ ହିଁ ତାଙ୍କ ସୃଜନଶୀଳତା ଗୁଣ ବଳରେ ଲଙ୍ଗଳ ସଜ ଗଢିବାରେ ନିପୁଣତା ହାସଲ କରିଥିଲେ । ତେଣୁ ଆମଗାଁ ଓ ବଡକୁଟୁଣିଗାଁର ଚାଷିମାନେ ତାଙ୍କ ଉପରେ ଭରସା କରି ତାଙ୍କପ୍ରତି କୃତଜ୍ଞ ଥିଲେ ।

ମହରିଗି ଜଣେ ମିଷ୍ଟଭାଷୀ ଓ ପରୋପକାରୀ ବ୍ୟକ୍ତି ଥିଲେ । ତାଙ୍କ ସରଳ ଜୀବନଯାପନ ଓ ପର ଅପଣାର ଭେଦଭାବ ନଥିବା ଗୁଣ ଯୋଗୁଁ ଗାଁ ସଭାରେ ଯେଉଁ ନିଷ୍ପତ୍ତି ନିଆଯାଏ, ତାଙ୍କ ପରାମର୍ଶ ନିଆଯାଏ । ମନ୍ଦିର ଉନ୍ନତି କାର୍ଯ୍ୟରେ ସେ ନିଜକୁ ନିୟୋଜିତ ରଖିଥାନ୍ତି ।

ପ୍ରଭୁଭକ୍ତିର ନିଦର୍ଶନ ସ୍ୱରୂପ, ଗାଁର ଧର୍ମପ୍ରାଣ ବ୍ୟକ୍ତିମାନେ ପୂଜା ପାଇଁ କିପରି ଫୁଲ ପାଇବେ, ସେ ଉଦ୍ଦ୍ୟେଶରେ ଦୁଆର ମୁହଁରେ ମଧୁମାଳତୀ ଲତା ଲଗାଇ ବଡ ଛାମୁଁଡିଆ କରିଥାନ୍ତି । ଲୋକମାନେ ପର୍ଯ୍ୟାପ୍ତ ପରିମାଣର ଫୁଲ ସଂଗ୍ରହ କରନ୍ତି, ସିଏ ତା'ତଳେ ତାଙ୍କ କାଠଶାଳ କରିଥାନ୍ତି । ଲୋକମାନେ ମଧ୍ୟ ସେଠାରେ ବସି ଖୁସି ଗପ ହୁଅନ୍ତି । ସିଏ ଗୋଟିଏ ଦେଶି କଳା କୁକୁର ପୋଷିଥାନ୍ତି । ତାଙ୍କ ପୁଅ ଅରିଆ ସେ କୁକୁର ସାଙ୍ଗରେ ଖେଳେ ଓ ପଣ୍ଡାଘର ସତ୍ୟ ମଧ୍ୟ ତା'

କାଂଚିଆ କୁକୁର ନେଇ ଦୁହେଁ ଖେଳନ୍ତି । କୁକୁରଙ୍କୁ ସେମାନେ ଏପରି ତାଲିମ ଦେଇଥାନ୍ତି ଯେ, ସେମାନଙ୍କ କଉତୁକିଆ ଖେଳ ଦେଖିବାକୁ ଭାରି ମଜା ଲାଗେ । ବିଶେଷକରି ହଳ କରିବା, ଶଗଡ଼ ଯୋଚି ଜିନିଷ ବୋହିବା ଇତ୍ୟାଦି ।

## ସନେଇ ସେଠୀ

ଶାସନ ଗାଁ ହେତୁ ଠାକୁର ପୂଜା, ପର୍ବପର୍ବାଣୀ ହୋମଯଜ୍ଞ ଇତ୍ୟାଦି ଧର୍ମ ସମ୍ବନ୍ଧୀୟ କାର୍ଯ୍ୟକ୍ରମ ହିଁ ଲୋକମାନଙ୍କର ମୁଖ୍ୟ ଜୀବିକା । ଏ ସବୁ ସମ୍ପାଦନ କରିବାକୁ ହେଲେ ସେବକମାନଙ୍କର ଉପସ୍ଥିତି ଅପରିହାର୍ଯ୍ୟ । ତେଣୁ ମୂଳରୁ ହିଁ ମାଳି, ପୁଜାରୀ, ଗଉଡ, ଭଣ୍ଡାରୀ, ରଜକ ଇତ୍ୟାଦି ସେବକଙ୍କୁ ସାଙ୍ଗରେ ନେଇ ଏ ଗାଁ ସ୍ଥାପନା କରାଯାଇଥିଲା । ସ୍ନେହ ସହାନୁଭୁତି ବଜାୟରଖି ପରସ୍ପର ମଧ୍ୟରେ ଉତ୍ତମ ସମ୍ପର୍କ ରହିଥିବାରୁ ଅଞ୍ଚଳରେ ଏ ଗାଁର ଟେକ ଥିଲା । ଏପରିକି, ଦଳିତ ଜାତିର ପ୍ରଜା ହେଲେବି, ତାଙ୍କ ପ୍ରତି ଦୟା ଓ ଆଦର ଗ୍ରାମ ଲୋକମାନଙ୍କର ରହି ଆସିଚି । ସେମାନଙ୍କ ମଧ୍ୟରେ ଏକ ଚର୍ଚ୍ଚିତ ଚରିତ୍ର ହେଲା, ସନେଇ ସେଠୀ । ଗାଁକୁ ପଶ୍ଚିମ ଦିଗରୁ ପ୍ରବେଶ କରିବା ମୁଖ୍ୟ ପଥରେ ଉତ୍ତର ସାହି ଓ ମା' କଜଳେଇ ଠାକୁରାଣୀଙ୍କ ଆସ୍ଥାନର ବିପରୀତ ପାର୍ଶ୍ୱରେ ବାସକରୁଥିବା ଏଇ ରଜକ ପରିବାରର ମୂଳ ବାସିନ୍ଦା କିଏ ଯଦିଓ ଜଣାନାହିଁ, କିନ୍ତୁ ତାଙ୍କ ଦାୟାଦ ରୂପେ ଦୁଇ ଭାଇ ଗାଁର ପ୍ରଥମ ବାସିନ୍ଦା । ବଡ ଅଂଶର ପୁତ୍ର ସନେଇ, ବାଲାଜୀ, ରାମ, ଦଣ୍ଡୁ, ଫଂଚୁ ଓ ସାନ ଅଂଶର ବୀର ସେଠୀଙ୍କ ସହ ବିଶେଷ କାରବାର ହେଉଥିବରୁ ସେମାନଙ୍କ ବିଷୟରେ ତଥ୍ୟ ଦେବା ପ୍ରାସଙ୍ଗିକ ହେବ । ଭାଇମାନଙ୍କ ମଧ୍ୟରେ ସନେଇ ସେଠୀ ଜ୍ୟେଷ୍ଠ ଓ ସିଏ ଗାଁ ସେବାରେ ଉତ୍ସର୍ଗିକୃତ ଭାବେ ଯୋଗଦାନ କରିଥିବାରୁ ତା' କଥା ମନେପଡେ । ଗାଁ ଠାକୁରାଣୀ ପର୍ବରେ ମାନସିକ ବଳି ଉତ୍ସର୍ଗ କାମ ସନେଇ ହାତରେ ନ୍ୟସ୍ତ କରାଯାଇଥାଏ । ଯେଉଁବର୍ଷ ଯେତେ ଅଧିକ ମାନସିକ, ଆମର ସେତେ ଖୁସି, କାରଣ ଜନ୍ତାଳରେ ମାଂସ ଭୋଜିର ମଜା ବଢିଯିବା ସ୍ୱାଭାବିକ । ସେହିପରି ମହୁଲେଇ ଠାକୁରାଣୀଙ୍କର ସେ ଜାନି (ପୂଜକ) ହୋଇଥିବାରୁ ମଙ୍ଗଳବାର ଓ ଅନ୍ୟ ପର୍ବଦିନରେ ସେଇ ପୀଠରେ ଭୋଜି ହେବା ତା'ରି ଦାୟିତ୍ୱରେ ଥାଏ ।

ଅନ୍ୟଏକ ବିଶେଷ କାର୍ଯ୍ୟ ସେ ସମ୍ପାଦନା କରୁଥିବା ହେତୁ ତା'ର ଉପସ୍ଥିତି ସଭିଏଁ ଉପଲବ୍ଧି କରିବା ସ୍ୱାଭାବିକ । ମା' ଭଉଣୀମାନେ ଗରା ଓ ବାଲ୍ଟି ନେଇ କୂଅରୁ ପାଣି ଟାଣିଆଣନ୍ତି । ବହୁସମୟରେ ଗରା କିମ୍ବା ବାଲ୍ଟି ମାଠିଆ କୂଅରେ ପଡିଯାଏ । କୂଅରୁ ଉଦ୍ଧାର କରିବା ସନେଇର ବାହାଦୂରୀ । ସିଏ କୂଅରେ ପଶିଲେ, ଆମେ ଉତ୍ସୁକତାର ସହ ଦେଖୁଥାଉ ଓ ଉପଭୋଗ କରୁ । ସେ କୂଅରେ ପଶିବା ପୂର୍ବରୁ ଗୋଟେ ଦଉଡି ବନ୍ଧାହୋଇ ତଳକୁ ଓହଳାଇ ଦିଏ, କାନରେ ତେଲ ପକାଇ ତୁଳା ମେଞ୍ଚେ ଝୁଣ୍ଟା ଦିଏ, ଗୋଟେ ହାତରେ ଦଉଡିକୁ ଧରି ପଥର ଖୋପରେ ଗୋଡ ରଖି ଆସ୍ତେ ଆସ୍ତେ ଓହ୍ଲାଇ ପାଣିରେ ବୁଡଦିଏ । ବର୍ଷାଦିନେ ବିପଦ ଅଧିକ, କାରଣ ପାଣି ମୁହଁ ପର୍ଯ୍ୟନ୍ତ ଥାଏ । ବେଳେ ବେଳେ ଗରା ସାଙ୍ଗକୁ ବହୁ ପୂର୍ବରୁ ହଜିଯାଇଥିବା ଜିନିଷ ମିଳିଯାଏ ଓ ତାହା ଏକ ଆଲୋଚନାର ବିଷୟ ହୋଇଯାଏ ।

## ଲିଙ୍ଗା ବିନ୍ଧାଣି

ଗୋଟିଏ ହାତରେ ନିହଣ ତାଙ୍କର ଆର ହାତରେ ବାରସି ।
ଉହୁଙ୍କି ପାହାର ପକାନ୍ତି ଦମ୍ଭରେ କାଠରେ ଯାଏ ସେ ପଶି ।।
କଳା ମଚମଚ ଚେହେରା ତାଙ୍କର ଧୋତି ଲମ୍ୱେ ଆଣ୍ଠୁଯାଏ ।
ଡେଙ୍ଗାଗେଡା କେବେ ବାରି ହୁଏନାହିଁ ଅଣ୍ଟା ସଳଖ ନଥାଏ ।।
ତଳକୁ ଚାହିଁକି ଚାଲନ୍ତି ବିନ୍ଧାଣି ବେକ ବଙ୍କା ହେବାଦିନୁ ।
ପାକୁଆ ପାଟିରେ ପାନଖଣ୍ଡେଜାକି ହେଉଥାନ୍ତି ଗୁଣୁଗୁଣୁ ।।
ଡଗଡଗ ଚାଲି ଯାଉଥିବାବେଳେ ଅଣ୍ଟାକୁ ଟିକେ ସଳଖି ।
ଠିଆହୋଇ ମୁହଁ ବଙ୍କେଇ ଚାହାନ୍ତି କହିବେ ପରା ସେ କିଛି ।।
ଲିଙ୍ଗାମହାରଣା କାମରେ ନିପୁଣ ଅଞ୍ଚଳରେ ଜଣାଶୁଣା ।
ଶଗଡ ଲଙ୍ଗଳ ଚାଷ ଯନ୍ତ୍ରପାତି ଯେତେକ ଘରକରଣା ।।
ବଢେଇ ନଥିଲେ କେତେ ଅସୁବିଧା ଗାଁ ଲୋକେ ଚିନ୍ତାକଲେ ।
ଲିଙ୍ଗାଙ୍କ ସନ୍ଧାନ ପାଇ ଗୋଲଗାଁରୁ କାର୍ଯ୍ୟୀ ତାଙ୍କୁ ଡକାଇଲେ ।।
କୌଳିକ ବୃତ୍ତିରେ ମାହିର ସେ ଥିଲେ ତାଙ୍କ ପୁଅ ଉଦ୍ୟନାଥ ।
ପିତାଙ୍କ ପଥକୁ ଅନୁସରି ନେଲେ ରଖିଲେ ତାଙ୍କର ଟେକ ।।

## ବିଶିଆ କମାର

ମନ୍ତ୍ରି ରାଜପଦ ପ୍ରାପ୍ତ ହେଲେ ଯାଇ
ବୋଲନ୍ତି ପ୍ରତିଭାବାନ।
ଗାଁ ବିଶ୍ୱନାଥ ବିଶିଆ ହିଁ ନାମ
କରିଲେ ବି ଶ୍ରେଷ୍ଠକାମ ।।
ଏପରି ଅନେକ ଉଜ୍ଜ୍ୱଳ ଜ୍ୟୋତିଷ୍କ
ଯାଉଛନ୍ତି ଛାଡି ଧରା।
ଲେଖାରେ ରହୁନି ଫଳକ ଲାଗୁନି
ବିସ୍ମୃତି ହେଉଛି ପରା ।।
ବିଶି ମହାରଣା ଆମ ଗାଁ କମାର
ଲୁହା କାମ କୁଳ ବୃତ୍ତି ।
ସୃଜନଶୀଳତା କର୍ତ୍ତବ୍ୟରେ ନିଷ୍ଠା
ବଢିଥିଲା ତାଙ୍କ ଖ୍ୟାତି ।।
ଲିଙ୍ଗା ମହାରଣା ସୁପାରିଶ କଲେ
ତାଙ୍କ ବନ୍ଧୁ ବିଶ୍ୱନାଥ।
ଲୁହା କାମ ପାଇଁ ବିଶ୍ୱନାଥ ଜଣେ
କୁଶଳୀ କାରିଗର ତ ।।
ଖାଲି ହାତରେ ସେ ଆସିଲେ ଗାଁଆକୁ
ନାହିଁ ବାସ ନାହିଁ ଧନ।
ବଦାନ୍ୟ ବ୍ୟକ୍ତିଙ୍କ ମେଲାଡିହ ପାଇ
ଶାଳ କରିଲେ ନିର୍ମାଣ ।।
ବିଶିଆ କମାର ଗଲେଣି କେବେଠୁ
ତାଙ୍କ ସହ କେତେ ସାଥି।
ତାଙ୍କ କର୍ମ ନିଷ୍ଠା ସୃଜନଶୀଳତା
ଲୋକେ ମନେ ରଖିଛନ୍ତି ।।
ତାଙ୍କପରି ଜଣେ କୁଶଳୀ କର୍ମଠ

ନଥିଲେ ଆଖପାଖରେ ।
ଲୁହା ଲହୁରୁଣୀ କଟୁରି ପନିକି
ପାରଙ୍ଗମ ଗଢିବାରେ ।।
ସମୟ କ୍ରମରେ ବୁଦ୍ଧିବଣା ହେଲା
ମନ ହେବାରୁ ଅଥୟ ।
କୁଳବୃତ୍ତି ଛାଡି ଅନ୍ୟ ବେଉସାରେ
ରଖିଲେ ନିଜର ଲୟ ।।
ଯେତେକ ସୁନାମ ଅର୍ଜନ କରିଲେ
ଧିରେ ସବୁ ଲିଭିଗଲା ।
ବେପାର ବେଉସା ସ୍ଥିର ପଡିଗଲା
ଦୁଃଖରେ କାଳ କଟିଲା ।।
ତାଙ୍କ କଥା ଆଜି ମନେପଡେ କାହିଁ
ନହେଲେ ବି ମୁଖ୍ୟ ଲୋକ ।
ତାଙ୍କର ଭୂମିକା ପ୍ରଶଂସାର ଯୋଗ୍ୟ
ରଖିଛନ୍ତି ଗ୍ରାମ ଟେକ ।।
କୌଳିକ ବୃତ୍ତିରେ ନିଷ୍ଠା ଥିଲା ବୋଲି
ଚାଷୀ ଆଶ୍ୱସ୍ତି ପାଇଲେ ।
ପାଖ ଆଦିବାସୀ ଗାଁଆଁର ସଭିଏଁ
ତାଙ୍କ ପ୍ରିୟପାତ୍ର ହେଲେ ।।
ନୂଆ ନୂଆ ସାହି ସ୍ଥାପନା କଲେ ସେ
ଗାଁମୁଣ୍ଡ ପଡିଆରେ ।
ଘରସଂଖ୍ୟା ବଢି ଗହଳି ଜମିଲା
ଲୋକେ ରହିଲେ ଖୁସିରେ ।।
କମାର ସାହିରୁ ନୂଆ ସାହି ପୁଣି
ନାଳଗୋଡିସାହି ନାମ ।
ମୂଳ ଗାଆଁ ଛାଡି ଯେତେ ପଡା ହେଲା

ସବୁ ତାଙ୍କରି ଉଦ୍ୟମ ।।
ଅଦମ୍ୟ ଉତ୍ସାହ    ଅବିରାମ ଶ୍ରମ
ଉନ୍ନତିର ପଥ ଡୋରି ।
ସେଚାବିକୁ ଧରି    ଚାଲିଲେ ବିଶିଆ
ପାହାଚ ପାହାଚ ଚଢ଼ି ।।

## ପଞ୍ଚୁ ବାରିକ

ସମୟ ସ୍ରୋତରେ    ଲିଭିଯାଏ କିନ୍ତୁ
ସ୍ମୃତି ପଟଳରେ ଥାଏ ଘଟଣା ।
ସେ ସ୍ମୃତି ପେଡ଼ିକୁ    ଖୋଲି ଖେଳାଇଲେ
ମନେ ପଡେ ସୁଖ ଦୁଃଖ ବେଦନା ।।
ପଂଚୁଆ ବାରିକ    ଚର୍ଚ୍ଚିତ ଚରିତ୍ର
ପତି ପତ୍ନୀ ଦୁହେଁ ଆଉ ନାହାନ୍ତି ।
ପୁଅ ଝିଅ ନାତି    ନାତୁଣି ସମେତ
ସମସ୍ତେ ଖୁସିରେ ଏବେ ଅଛନ୍ତି ।।
ସେମାନଙ୍କ ହସ    ଉଲ୍ଲାସ ଦେଖିଲେ
ମନେ ପଡେ ସେଇ ଲିଭିଲା ଦିନ ।
ପ୍ରଭୁଙ୍କ ଇଛାରେ    ଏ ଜଗତ ଚଳେ
ଦୁର୍ଦ୍ଦିନ ବଦଳି ଆସେ ସୁଦିନ ।
ଅଭାବୀ ମଣିଷ    କୁଟୁମ୍ବ ବି ବଡ
ଦିନ ମଜୁରୀକୁ ଆଶା ରଖନ୍ତି ।।
ଯେଉଁଦିନ କାମ    ମିଳେ ନାହିଁ ତାଙ୍କୁ
ହତାଶ ନ ହୋଇ ପ୍ରଭୁ ସ୍ମରନ୍ତି ।
ଓଳିଏ ଖାଇଲେ    ଓଳିଏ ଉପାସ
ଅନ୍ନ ଚିନ୍ତା ଘାରେ ପାହିଲେ ରାତି ।
ସ୍ୱାଭିମାନୀ ସିଏ    ହାତ ପତାନ୍ତିନି

ପେଟେ ଓଦାକନା ଦେଇ ଶୁଅନ୍ତି ।।
ଘରେତ ନଥାଏ ଚାତକ ପରାଏ
ସଂଜ ପହରକୁ ଚାହିଁ ରହନ୍ତି ।
ଯେବେ ଧାନ ମିଳେ ଶିଝାଇ ଉଗୁଜି
କୁଟାକଣ୍ଡା କରି ଭାତ ରାନ୍ଧନ୍ତି ।।
ଭୋକରେ ପିଲାଏ ଶୋଇଯାଇଥାନ୍ତି
ନିଦରୁ ଉଠାଇ ଦିଅନ୍ତି ଦାନା ।
ସେ ଦୁଃଖ ଦୁର୍ଦ୍ଦଶା ବର୍ଣ୍ଣନା ବାହାରେ
ବିଶ୍ୱାସ ଯିବଟି ଦେଖିଲେ ସିନା ।।
ଈଶ୍ୱରଙ୍କ ସାହା ହେଲା ବୋଲି ଏବେ
ପାଞ୍ଚ ଜଣରେ ସେ ଗଣାହୋଇଲେ ।
ତାଙ୍କ ବଡପୁଅ ମାଟିଆ ବାରିକ
ଗ୍ରାମ ସଭାପତି ପଦ ପାଇଲେ ।।
ସବୁରି ମୂଳରେ ନିଷ୍ଠା ଓ ସଙ୍କଳ୍ପ
ଲୋକଙ୍କ ବିଶ୍ୱାସଭାଜନ ହେଲେ ।
ଉନ୍ନତିର ବାଗ ହାତକୁ ଆସିବ
କର୍ମ ହିଁ ଈଶ୍ୱର ବିଶ୍ୱାସ ଥିଲେ ।।

## ଆନନ୍ଦ ବେହେରା

ଆନନ୍ଦ ଜାତିରେ କେଉଟ। ତା'ର ବଡ଼ ପୁଅର ନାମ ଖଦାଳ। ମନରେ ପ୍ରଶ୍ନ ଉଠେ ଏ ଖଦାଳ ବେହେରା କିଏ ? ଗାଁ ଐତିହ ସହ ଏ ଚରିତ୍ରର ସମ୍ପର୍କ କ'ଣ ? ନିଶ୍ଚୟ ଅଛି । ଆମେ ସମସ୍ତେ ପିଲାବେଳୁ ଶୁଣିଆସିଛୁ ମାଛ ଖାଇବାକୁ ହେଲେ ଖଦାଳ କେଉଟ ପାଖକୁ ଯାଅ । ସିଏ ଉଛବ ପାତ୍ର ବଡ କିଆରିରେ ବେନ୍ଧା ବସେଇଚି, ଖାଳେଇ ଖାଳେଇ ମାଛ ବୋହି ଆଣୁଚି । .

କଥା ସେଇଠି ସରିନି । ତା' ବିଷୟରେ ଜାଣିବାକୁ ହେଲେ ତା'ର ପିଲାଦିନ କଥା ଜାଣିବାକୁ ହେବ । ତା'ର ବାପା ଆନନ୍ଦ ଓ ଭାଇ ରାଜୁ ଓ ମଙ୍ଗୁଲୁ। ଭଉଣୀ ଭାଷି ଓ ଶଶୀ । ତେବେ ସେମାନେ ଆମ ଗାଁର ନୁହଁନ୍ତି । ଗଂଜାମର କେଉଁ ଏକ

ସୁଦୂର ପଲ୍ଲୀ ଗାଁରୁ ଆସି ଏଠାରେ ମୂଲ କାମ କରି ଚଳୁଥିଲେ । ବୋଧହୁଏ ଉଛେଇ ନାଗଝରର ଆନ୍ନିକଟ କାମ ହେବାବେଳେ କୁଲି ସର୍ଦ୍ଦାର ଆନନ୍ଦକୁ କାମରେ ଲଗାଇଥିଲା । ବନ୍ଧକାମ ସରିବା ପରେ ଆମ ଗାଁ ପ୍ରତି ସେ ଆକର୍ଷିତ ହୋଇ ଏଠି ପରିବାର ସହ ରହିଗଲା । ସେମାନେ ଅତି ଗରୀବ, ଓଳିଏ ଖାଇଲେ ଓଳିଏ ଉପାସ । ପିନ୍ଧିବାକୁ ତାଙ୍କ ପାଖରେ ଲୁଗା ନଥାଏ ।

ମୁଁ ପିଲାବେଳେ ପୁନାମା ଘରକୁ ମୁଢ଼ି କିଣିବାକୁ ଯିବାବେଳେ ଖଦାଳ ମା'ଙ୍କୁ ଦେଖେ । ସେମାନେ ଆଚାର୍ଯ୍ୟଙ୍କ ଗୁହାଳ ଘରେ ରହୁଥିଲେ । ଖଦାଳ ମା' କଳା ମଚ୍ ମଚ୍ ଲମ୍ବା ଚେହେରା, ନାକରେ ଦଣ୍ଡି, ଗୁଣା । ସିଏ ଯେଉଠିକି ଯାଏ, ତା' ପଛରେ ପୁଅ ମଙ୍ଗୁଲୁ । ଚିକ୍କଣ କଳା, ଡେଙ୍ଗା, ଲଙ୍ଗଳା ଦେହ। ତାକୁ ଦେଖିଲେ କେମିତି ଅଡୁଆ ଲାଗେ । କାରଣ ଏତେ ବଡ ପିଲାଟା ଦାଣ୍ଡରେ ଲଙ୍ଗଳା ବୁଲୁଛି । ସେଥିରୁ ବାରିହୁଏ, ତାଙ୍କ ଘରେ ଲୁଗାପଟାର ଅଭାବ ଥିଲା । ଯେଉଁ ଗାମୁଛା ଖଣ୍ଡକ ପିନ୍ଧେ, ଥରେ ଧୋଇଲେ, ଶୁଖିବା ପର୍ଯ୍ୟନ୍ତ ଲଙ୍ଗଳା ରହିବାକୁ ପଡେ । ଅନ୍ୟ ପରିବାର ସଦସ୍ୟଙ୍କ ବିଷୟରେ ଯଦିଓ ହିସାବ ନାହିଁ, ଶୁଣିଥିଲି, ଖଦାଳର ଜଣେ ଭଉଣୀ ଥିଲା, ନାଁ ଭାଷି । ବନ୍ଧ କାମ ହେବାବେଳେ ମୂଲ କାମ କରୁଥିଲା । କାମ କରୁଥିବା ସମୟରେ ବନ୍ଧରେ ପଡି ମରିଗଲା । କିନ୍ତୁ ଲୋକେ କୁହାକୁହି ହୁଅନ୍ତି, ତାକୁ ମାରିଦିଆଗଲା । ଅନ୍ଧବିଶ୍ୱାସର ଶିକାରହୋଇ, ବନ୍ଧର ସ୍ଥାୟିତ୍ୱ ପାଇଁ, ନରବଳି ଦେବା ଉଦ୍ଦେଶ୍ୟ ରଖି କୁଲିସର୍ଦ୍ଦାର ନିର୍ଦ୍ଦେଶରେ ତାକୁ ଠେଲିଦେଇ ମାଟି ପୋତିଦିଆଗଲା । ସମୟକ୍ରମେ, ସେ ପରିବାର କୁଆଡେ ଗଲେ, ତା'ର ହିସାବ କେହି ରଖିନି ।

କିନ୍ତୁ ଏ ଗାଁ ମାଟିର ଆକର୍ଷଣ ଭିନ୍ନ । ଗାଁର ବାସିନ୍ଦା (ବ୍ରାହ୍ମଣ) ମାନଙ୍କର ଦୟା ଓ ସହାନୁଭୂତି କିଏ କେବେ ଭୁଲିପାରେ ? ଏ ଗାଁରେ ଯିଏ ଜନ୍ମ ନିଏ କିମ୍ବା ଦୀର୍ଘ କିଛିବର୍ଷ ଅତିବାହିତ କରିଥାଏ, ସେ କ'ଣ ସେଇ ଦିନଗୁଡିକୁ ଭୁଲିପାରେ ?

ଖଦାଳର ମା'ବାପା ଦୀର୍ଘବର୍ଷ ଏ ଗାଁରେ ରହିବାପରେ, ଯଦିଓ ନିଜ ଜନ୍ମମାଟିକୁ ଫେରିଗଲେ, ସେମାନଙ୍କ ପିଲାମାନେ କିନ୍ତୁ ବିଶେଷକରି ଖଦାଳ, ଯେହେତୁ ପିଲାଦିନ କଟାଇଥିଲା, ସେ କି ଗାଁ ଭୁଲିପାରିବ ? ଖଦାଳର ହଠାତ୍ ଆବିର୍ଭାବ ଗାଁ ଲୋକଙ୍କୁ ଚକିତ କରିଦେଲା । ଏତେ ବର୍ଷ ପରେ ସେ ଫେରି

ଆସିଛି । ତା'ର ପିଲା ବୟସର ଚପଳାମୀ ଓ କାର୍ଯ୍ୟକ୍ରମପ୍ରତି ଯଦିଓ କାହାର ବିଶେଷ ଧ୍ୟାନ ନଥିଲା, ଏବେ ଯୁବା ବୟସରେ ସେ ଯେତେବେଳେ ଗାଁରେ ଆସି ପହଞ୍ଚିଲା, ତା'ର କଥାବାର୍ତ୍ତା ଓ ଚାଲିଚଳଣରୁ ସେ ଜଣେ କର୍ମଠ ଓ ବିଶ୍ୱସ୍ତ ମଣିଷ ବୋଲି ବାରି ହୋଇ ଯାଉଥିଲା । ଜନ୍ମମାଟିପ୍ରତି ତା'ର ଅନୁରକ୍ତି ହିଁ ତାକୁ ଫେରାଇ ଆଣିବାର କାରଣ ବୋଲି ଜଣା ପଡିଲା ।

ସିଏ ଗାଁରେ ଖଣ୍ଡେ ଜାଗା କିଣି ଘରଟିଏ କଲା । ସଂସାର ଠିକ୍ ଚାଲିଲା । ସ୍ନେହଭରା କଥାରେ ସେ ସମସ୍ତଙ୍କ ମନ କିଣି ନେଲା ଓ ସଭିଙ୍କ ପ୍ରିୟପାତ୍ର ବି ହେଲା । ନାଗଝର ନଦୀ, ଚକାଆମ୍ବ ଜଙ୍ଗଲ, ଗାଁଲୋକଙ୍କ ସ୍ନେହ ଓ ଆଦର ଆଦି ପୂର୍ବ ସ୍ମୃତିକୁ ଚାରଣ କରିବା ସହ ସେ ଏଠାକୁ ଫେରିବାକୁ କିପରି ଅନୁପ୍ରାଣିତ ହେଲା, ମଝିରେ ମଝିରେ ସେ ବିଷୟ ଅନ୍ୟ ଆଗରେ ବର୍ଣ୍ଣନା କରେ । ଭାଗ୍ୟର ବିଡମ୍ବନା, ଯଦିଓ ଖଦାଳ ଜଣେ ଖୁସି ମିଜାସର ମଣିଷ ଓ ଅଭାବ ଅନାଟନ ପାଇଁ ମନରେ ତା'ର ତିଳେ ବି ଅନୁଶୋଚନା ନଥାଏ, ତା'ର ସାଂସାରିକ ଜୀବନରେ ଭଗବାନ ସୁଖ ଦେଲେନାହିଁ । ତା'ର ଏକମାତ୍ର ବିକଳାଙ୍ଗ ପୁଅ ଖଦାଳ ପାଇଁ ବୋଝ ଉପରେ ନଳିତା ବିଡା ପରି ଅନୁଭୁତ ହେଲା । ତଥାପି ସେ ହାର ମାନିନି, ସବୁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ସେ ଅହରହ ସଂଗ୍ରାମ ଚଳାଇଅଛି ।

## ମୋ ସାଙ୍ଗ ଚନ୍ଦ୍ର ଭାଇନା

ଚନ୍ଦ୍ରଭାଇନା ସହ ମୋ ସମ୍ପର୍କ ନିବିଡ, ଏବେ ନୁହେଁ ପିଲାବେଳରୁ । ସେ ସମ୍ପର୍କରେ ଭାଇନା, ବୟସରେ ମୋଠୁ ବର୍ଷେ ବଡ କିନ୍ତୁ ଭାଇନା ଅପେକ୍ଷା ସାଙ୍ଗ ସମ୍ପର୍କ ଅଧିକ । ଆମ ଦୁହିଁଙ୍କର ଆର୍ଥିକ ଅବସ୍ଥା ପ୍ରାୟ ସମାନ, ଭାବନା ବି ଏକା। ପରିସ୍ଥିତିର ତାଡନାରେ ରୋଜଗାର ବଢାଇବା ପାଇଁ ଆମ ଦୁଇ ପରିବାର ମଧ୍ୟରେ ଜୀବନ ଜୀବିକା ସମ୍ପର୍କ ବଢିବାରୁ ଆମେ ଦୁହେଁ ବହୁ ସମୟ ଏକାଠି କଟାଇଥିଲୁ ।

ବାଇଗଣ ଚାଷ ଆମ ଅଞ୍ଚଳ ପାଇଁ ଏକ ଅର୍ଥକରୀ ଫସଲ । ଧାନଚାଷରୁ ପେଟକୁ ସିନା ଦାନା ମିଳେ । କିନ୍ତୁ ଘରର ଅନ୍ୟଖର୍ଚ୍ଚ ପାଇଁ ନଗଦ ଟଙ୍କା ଦରକାର । ତେଣୁ ସବୁଚାଷୀ କିଛିନାକିଛି ବାଇଗଣ ଫସଲ କରନ୍ତି । କିନ୍ତୁ ସେ ଚାଷପାଇଁ ଅଧିକ ପରିଶ୍ରମ ଲୋଡା ଓ ଖର୍ଚ୍ଚ ବି ଅଧିକ । ଲୋକବଳ, ଓ ଆର୍ଥିକ ସ୍ଥିତିକି ନେଇ

ନନା ତାଙ୍କ ବଡ଼ ଭାଇ ଖଲିଆ ଭାଇନାଙ୍କ ସହ ଭାଗରେ ବାଇଗଣ ଫସଲ କରିଥିଲେ । ତେବେ ଏ ଚାଷ ସହ ଚନ୍ଦ୍ରଭାଇନା ସହ ମୋର ସମ୍ପର୍କ ନିବିଡ଼ତା ହେବାର ସମ୍ବନ୍ଧ ବି ଅଛି । ବାଇଗଣ ଫସଲର ଜଗାରଖା କରିବାକୁ ଲୋକଟିଏ ଲୋଡ଼ା । ମୂଲ ଦେଇ ତ ରଖିହେବନି କାରଣ ବ୍ୟୟସାପେକ୍ଷ । ତେଣୁ ନନା ଓ ଖଲିଆ ଭାଇନା ପାଳିକରି ଦିନେ ଦିନେ ପଦା ଜଗିବାକୁ ଯାଆନ୍ତି । କିନ୍ତୁ ସେମାନଙ୍କୁ ଘରର ଅନ୍ୟ କାମ ବି କରିବାକୁ ହେବ । ତେଣୁ ଆମକୁ ଯିବାକୁ ହୁଏ । ଆମେ ବହୁତ ଛୋଟ ହୋଇଥିବାରୁ ଦୁହେଁ ମିଶି ଛୁଟିଦିନ ଓ କେବେକେବେ ସ୍କୁଲ୍ ବନ୍ଦକରି ବାଇଗଣ ପଦାରେ ମାଙ୍କଡ଼ ଜଗିବାକୁ ଯାଉଥିଲୁ । ସେଇ ଛୋଟ ବୟସରେ ଯଦିଓ ଆମ ସମାସ୍କନ୍ଧ ପିଲାଙ୍କ ସହ ଆମ ସମ୍ପର୍କ ବଢ଼ିବା କଥା, କିନ୍ତୁ ପଦାକୁ ଯାଇ ଆମ ସମ୍ପର୍କ ଅନ୍ୟ ପଦା ଜଗୁଆଳୀଙ୍କ (ଲଡୁଆ, ଭୀମ, ଡୁଙ୍ଗା, ସୁବାସୀ, ସେରନ୍ତି, ଇତ୍ୟାଦି) ସହ ବଢ଼ିଥିଲା । ପଦା ଜଗିବା ବେଳର ଏକ ଘଟଣା ମୋର ମନରେ ଛାପସ୍ୱରୂପ ଏବେବି ରହିଚି ।

ବେଲରଗଡ଼ି ନିକଟ ଜଙ୍ଗଲ ଭିତରେ ସମସ୍ତେ ବାଇଗଣ ପଦା କରନ୍ତି । ଦିନସାରା ପଦାରେ ବସି ବସି ବିରକ୍ତ ଲାଗିବା ସ୍ୱାଭାବିକ । ତେଣୁ ସବୁ ପଦା ଜଗୁଆଳିମାନେ ପ୍ରତିଦିନ ଜଣଙ୍କ ପଦାରେ ଏକାଠି ବସନ୍ତି ଓ ମଜା ଗପ କରନ୍ତି । ମଝିରେ ମଝିରେ ନିଜ ପଦାଆଡ଼େ ଯାଇ ଆଖି ବୁଲାଇ ନିଅନ୍ତି । ଥରେ ଆମେ ସମସ୍ତେ ଗପସପ କରିବା ସମୟରେ, ଚନ୍ଦ୍ର ଭାଇନା ମୋତେ କହିଲେ, ଯା ଟିକେ ପଦା ବୁଲିଆସିବୁ । ମୋତେ ଏକା ଯିବାକୁ ଭୟ ଲାଗିଲା । କିନ୍ତୁ ବାଧ୍ୟ କରିବାରୁ ଗଲି କିନ୍ତୁ ଦେଖିଲି ଦଶ ବାରଟା ଛୋଟବଡ଼ ମିରିଗ ପଦା ଭିତରେ ବୁଲୁଛନ୍ତି । ସେମାନଙ୍କୁ ଦୂରରୁ ଦେଖି ଭୟରେ ଥରିବାକୁ ଲାଗିଲି ଓ ବଡ଼ ପାଟିରେ ଡାକ ପକାଇଲି । ମୋ' ପାଟିଶୁଣି ସମସ୍ତେ ଆସିଲା ବେଳକୁ ସେ ମିରିଗ ପଲ ପଦା ତଳ ଶାଳବଣରେ ପଶିଯାଇଥିଲେ ।

## ସର୍କସ ଦେଖା, ଭିନ୍ନ ଏକ ଅଭିଜ୍ଞତା

ଗାଁର ଅବସ୍ଥିତି ଏମିତି ଏକ ଅପହଂଚ ଅଞ୍ଚଳରେ ଥିଲା ଯେ, ବାହାର ଜଗତ ସହ ସମ୍ପର୍କ ପ୍ରାୟ ନଥିଲା । ସକାଳରୁ ରାତି ପର୍ଯ୍ୟନ୍ତ ସେଇ ଘର, ଗାଁ, ପୋଖରୀ, ଜଙ୍ଗଲ । ସାଙ୍ଗ ମାନଙ୍କ ସହ ଆଳାପ, ଖେଳ କୁଦ । କେବଳ ବୋଉ, ନନା, ଓ

ଗାଁର ଗୁରୁଜନଙ୍କ କଥାକୁ ନିୟମ ମନେକରି ଓ ସେଇ ଅନୁକ୍ରମରେ ଦୈନନ୍ଦିନ ଜୀବନ ଓ ଜୀବିକା । ସ୍କୁଲ ଯିବା, ଶିକ୍ଷକ ଯାହା କହିଲେ ଓ ପଢାଇଲେ ତାହାହିଁ ବେଦର ଗାର ବୋଲି ମାନିନେଉଥିଲୁ । ଆମେ ମଫସଲ ପିଲା, ଆଧୁନିକତାର ଛାପ କ'ଣ ଆମକୁ ଜଣା ନଥାଏ । ଦୁନିଆ କେତେବଡ, କ'ଣ ସବୁ ଘଟୁଚି, ସେ ସୂଚନା ଆମ ପାଖରେ ନ ଥିଲା କିମ୍ୱା ମନରେ ଭାବନା ଆସୁନଥିଲା । ଶିକ୍ଷକଙ୍କଠାରୁ ଯେଉଁ ତଥ୍ୟ ଓ ସୂଚନା ମିଳୁଥିଲା ତାକୁ ହିଁ ଗ୍ରହଣ କରିନେଉଥିଲୁ । ମୋଟାମୋଟି କହିବାକୁଗଲେ ଦୁନିଆଟା ଆମ ପାଇଁ ଗାଁ ଓ ଶରଣକୁଳ ମଧ୍ୟରେ ସୀମିତ ଥିଲା । ନୟାଗଡ ବହୁତ ଦୂର । ମୋତେ ସେଠାକୁ ଯିବାକୁ ଆଗରୁ କେବେ ସୁଯୋଗ ମିଳିନଥିଲା । ମାମୁଁମାନେ ଯେହେତୁ ବ୍ରହ୍ମପୁର ସହରରେ ରହୁଥିଲେ, ଥରେ ଦି'ଥର କେବଳ ବ୍ରହ୍ମପୁର ଯାଇଥିଲି । ଭୋଜି ଭାତ, ମେଳା ମହୋତ୍ସବ ପରି ଶୁଭ ଅବସରରେ ଶରଣକୁଳ, କରଡା, ପଦ୍ମାଦେଇପୁର ମଧ୍ୟରେ ମୋର ଯିବା ଅସିବା ସୀମିତ ଥିଲା ।

ଜୀବନଟା ଏଭଳି ଏକ ସ୍ଥିତିରେ ବିତୁଥିବା ସମୟରେ, ଦିନେ ରାତିରେ ହଠାତ୍ ଉତ୍ତର ଦିଗରୁ ଏକ ଲମ୍ୱା ଆଲୋକ ରଶ୍ମି ବିଚ୍ଛୁରିତ ହେବା ଦେଖି ମୋତେ ଯେତିକି କୌତୁହଳ ଲାଗିଲା ତାଠୁ ବେଶି ଆଶ୍ଚର୍ଯ୍ୟ ଲାଗିଲା । ଆଗରୁ କେବେତ ଏମିତି ଆଲୁଅ ଦିଶୁନଥିଲା । ପରଦିନ ଲୋକମାନେ କୁହାକୁହି ହେଲେ ଯେ, ନୟାଗଡକୁ ଗୋଟେ ବଡ ସର୍କସ ଆସିଚି, ଅଞ୍ଚଳ ଲୋକଙ୍କୁ ଆକର୍ଷିତ କରିବା ପାଇଁ ସେମାନେ ଏଇ ଆଲୋକ ରଶ୍ମି ବିଚ୍ଛୁରିତ କରି ପ୍ରଚାର କରୁଛନ୍ତି । ସର୍କସ କଥା ଶୁଣିବାପରେ ମନରେ ଉତ୍କଣ୍ଠା ଜାଗ୍ରତ ହେବା ସ୍ୱାଭାବିକ । କାରଣ ସର୍କସରେ ପଶୁ ପକ୍ଷୀ ମାନଙ୍କର ଖେଳ, ଦୋଳିଖେଳ ଇତ୍ୟାଦି ଆଖିଆଗରେ ଭାଷି ଉଠିଲା । ଚନ୍ଦ୍ର ଭାଇନାତ ମୋର ସାଙ୍ଗ, ତା'ର ଭାଇନା ଦି'ଜଣ ନୟାଗଡରେ ଚାକିରି କରନ୍ତି । ତେଣୁ ତାକୁ କହିଲି ଭାଇନା; ନୟାଗଡରେ ରହମନ୍ ସର୍କସ ଖେଳ ଚାଲିଚି । ଦେଖିଗଲେ ହୁଅନ୍ତାନି ? ଚନ୍ଦ୍ରଭାଇନା ମୋ' କଥାରେ ରାଜିହୋଇ ତାଙ୍କ ଘରେ କଥାହେଲେ ଓ ମୁଁ ବୋଉଙ୍କଠାରୁ ଅନୁମତି ନେଲି । ସର୍କସ ଦେଖା ଖର୍ଚ୍ଚ ପାଇଁ ବୋଉ ମୋତେ କିଛି ପଇସା ଦେଲେ । ଆମେ ଦି'ଜଣ ସର୍କସ ଦେଖିବାକୁ ବାହାରିଲୁ । ଚାଲିଚାଲି ନୟାଗଡ ଯିବାକୁ ହେବ । ବାଟ ଜଣା ନାହିଁ । ଯଦିଓ ମୁଁ ଆଗରୁ କେତେଥର କେବଳ ପଦ୍ମାଦେଇପୁର ପର୍ଯ୍ୟନ୍ତ ଯାଇଚି

କିନ୍ତୁ ନୟାଗଡ ଯାଇନି । ଆମେ କଥାହେଲୁ ଯେ ଗାଁ ରାସ୍ତା ଦେଇଗଲେ ବାଟବଣା ହେବାର ଭୟ ଅଛି ତେଣୁ ଶରଣକୁଳ ଦେଇ ବସ୍ ଯିବା ରାସ୍ତାରେ ଯିବା । ଦୂର ହେଲେବି ସୁବିଧାରେ ପହଞ୍ଚିଯିବା । ପରଦିନ ସକାଳୁ ସକାଳୁ ବାହାରିପଡିଲୁ । ନୟାଗଡରେ ପହଞ୍ଚିଲାବେଳକୁ ୪ଟା ସମୟ ହେଇଥିଲା । ବଡହାଲିଆ ଲାଗୁଥାଏ । ରଘୁଭାଇନାଙ୍କ ଅଫିସରେ ପହଞ୍ଚିଲୁ । ସିଏ ଆମକୁ ଦେଖି ଆଶ୍ଚର୍ଯ୍ୟ ହେଇଗଲେ । ଜାଣିଲେ ଆମେ ସର୍କସ ଦେଖିବାକୁ ଆସିଚୁ । ଆମକୁ ସେ ତାଙ୍କ ବସାକୁ ନେଇ ବସିବାକୁ କହିଲେ ଓ ପଚାରିଲେ କ'ଣ ଖାଇଚ ? ଆମକୁ ବହୁତ ଭୋକ ହେଉଥିଲା । ଆମେ କହିଲୁ ଗାଁରୁ ମୁଢି ଆଣିଥିଲୁ, ବାଟରେ ଖାଇଲୁ । ସେ କହିଲେ, ହଉ, ମୁଁ ରୋଷେଇ କରୁଚି, ତୁମେମାନେ ଟିକିଏ ବିଶ୍ରାମ ନିଅ । ଆମେ ଏତେ ହାଲିଆ ହେଇଯାଇଥିଲୁ ଯେ, ବସୁବସୁ କେତେବେଳେ ଶୋଇଗଲୁ ଜାଣି ପାରିଲୁନି । ରଘୁଭାଇନା ଆମକୁ ନିଦରୁ ଉଠାଇଲେ ଓ କହିଲେ ଖାଇବ ଆସ । ଆମେ ଆଖି ମଳି ମଳି ଉଠିଲୁ । ଗରମ ଗରମ ଖେଚେଡି ଦେଖି ଭାରି ଖୁସି ଲାଗିଲା । ଏତେ ଭୋକ ହେଉଥିଲାଯେ, ସିଏ ଯାହା ବାଢିଦେଲେ, ତରତରରେ ସବୁ ଖାଇଦେଲୁ । ସନ୍ଧ୍ୟା ହେଇଯାଇଥାଏ । ଆମେ ରଘୁଭାଇନାଙ୍କ ସାଙ୍ଗରେ ସର୍କସ ପଡିଆକୁ ଗଲୁ । ସିଏ ଟିକେଟ କାଟିଦେଇ ଆମକୁ ଭିତରକୁ ପଠାଇଲେ ଓ କହିଲେ ଖେଳ ସରିଲେ ଘରକୁ ଚାଲିଆସିବ । ସର୍କସରେ ଯେଉଁ ସବୁ ଖେଳ ପ୍ରଦର୍ଶିତ ହେଲା ସେସବୁ ଅତି ମନୋମୁଗ୍ଧକର ଥିଲା ଓ ଆମେ ଭରପୁର ମଜା ନେଲୁ । ଖୁସିରେ ରାତି ନୟାଗଡରେ କଟାଇ ପରଦିନ ସକାଳୁ ପୁଣି ଚାଲିଚାଲି ଗାଁକୁ ଫେରିଲୁ । ନୟାଗଡ ଯିବାର ପ୍ରଥମ ଅନୁଭୂତି, ତା' ପୁଣି ଏକ ସର୍କସ ଦେଖିବା ପାଇଁ, ଆଜିବି ଆଖିଆଗରେ ସେ ଅନୁଭୂତି ଭାସିଯାଉଚି ।





ରାମ ଓ ଜୟକୃଷ୍ଣ ମିଶ୍ର





ଲିଙ୍ଗରାଜ ମିଶ୍ର



ହରେକୃଷ୍ଣ ମିଶ୍ର



ଜଗନ୍ନାଥ ମିଶ୍ର



ହାଡୁବନ୍ଧୁ ମିଶ୍ର



ଲକ୍ଷ୍ମଣ ମିଶ୍ର



ଭାଗିରଥୀ ମିଶ୍ର



ଲୋକନାଥ ମିଶ୍ର


ଅପ୍ସରା


ଅନାମ ଚନ୍ଦ୍ର ମହାପାତ୍ର


ପୁରୁଷୋତ୍ତମ ମହାପାତ୍ର


ଜୟକୃଷ୍ଣ ମହାପାତ୍ର


କନକ


ନରସିଂହ ମହାପାତ୍ର


ବାସୁଦେବ ମିଶ୍ର


ପ୍ରମୋଦ ଚନ୍ଦ୍ର ମହାପାତ୍ର


ପଦ୍ମାବତୀ


ଚିନ୍ତାମଣି ମହାପାତ୍ର


ଜଗନ୍ନାଥ ରଥ


ରାମଚନ୍ଦ୍ର ରଥ



ସୋମନାଥ ଆଚାର୍ଯ୍ୟ



ବାଞ୍ଛାନିଧି ମହାପାତ୍ର



ରଘୁନାଥ ମହାପାତ୍ର



ଜନ୍ମେଶ୍ୱର ମହାପାତ୍ର





ଗୋବିନ୍ଦ ଚନ୍ଦ୍ର ମିଶ୍ର ଓ ତାଙ୍କ ବୋଉ



ବୈଦ୍ୟନାଥ ମିଶ୍ର



ନରସିଂହ ମିଶ୍ର


ଦଣ୍ଡପାଣି ରାଜଗୁରୁ ମହାପାତ୍ର


ରାମଚନ୍ଦ୍ର କର


ଲୋକନାଥ ମିଶ୍ର


ସତ୍ୟବାଦୀ ମହାପାତ୍ର


ଭାଗବତ ସ୍ୱାଇଁ


ବାଈଆ ପ୍ରଧାନ


ଉଦୟନାଥ ମହାରଣା

# ଶେଷ ଦୁଇପଦ

ସ୍ୱପ୍ନ ସାକାର ହୋଇଛି, ପୂର୍ଣ୍ଣମାତ୍ରାରେ ନ ହେଲେ ମଧ୍ୟ ସମୟର ସ୍ରୋତରେ ଅନେକ କିଛି ବଦଳି ଯାଇଅଛି । ଲୋକନାଥ ପଟ୍ଟଯୋଶୀ କେବେ ଠୁ ଚାଲିଗଲେଣି । ତାଙ୍କ ସହିତ ଆହୁରି ଅନେକ ମହାମନିଷୀ ଏ ଧରାରୁ ବିଦାୟ ନେଲେଣି । ହେଲେ, ସେମାନେ ରଚି ଯାଇଥିବା କିମ୍ବଦନ୍ତି ମନରେ ସ୍ମୃତି ସ୍ୱରୂପ ସାଇତା ହୋଇ ରହିଛି; କିନ୍ତୁ ଭିନ୍ନ ଢଙ୍ଗରେ । ସେ ସମୟର କୋଡିଏ ତିରିଶ ଝାଟିମାଟି ଘର ବଦଳରେ ଗଢି ଉଠଛି ଅନେକ ସୁନ୍ଦର ସୁନ୍ଦର କୋଠାଘର । ଘରସଂଖ୍ୟା ବଢିଏବେ ପ୍ରାୟ ୧୫୦ ଘରର ବସତି । ନାଁ ଥିଲା କଜଳାଇପଲ୍ଲୀ କୃଷ୍ଣଶରଣପୁର ଶାସନ । ଏତେ ବଡ ନାଁର ପ୍ରାସଙ୍ଗିକତା କେହି ଅନୁଭବ ନକରିବାରୁ ଧିରେ ଧିରେ କେବଳ କଜଳାଇପଲ୍ଲୀରେ ସୀମିତ ରହିଲାଣି । ଅବଶ୍ୟ କଜଳାଇପଲ୍ଲୀ ଶାସନ କହିବାର କିଛି ମାନେ ନାହିଁ । କାରଣ, ବ୍ରାହ୍ମଣ ପରିବାର ସଂଖ୍ୟା ଧିରେ ଧିରେ ହ୍ରାସ ପାଇବାରେ ଲାଗିଲାଣି । ଯେଉଁ କେତେ ଘର ଅଛନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ନିଜ ନିଜ ଜୀବିକାକୁ ନେଇ ଅନ୍ୟତ୍ର ବସବାସ କଲେଣି । କେବଳ ପୈତୃକ ସମ୍ପତ୍ତିର ସ୍ମୃତିକୁ ବଜାୟ ରଖିବାପାଇଁ ଘର ଖଣ୍ଡିକ ଜରାଜୀର୍ଣ୍ଣ ଅବସ୍ଥାରେ ପଡି ରହିଛି । ସେ ଖଣ୍ଡକର ମୂଲ୍ୟ ମଧ୍ୟ ପରପିଢି ପାଇଁ ଆକର୍ଷଣ ବଦଳରେ ବୋଝହେବ । ଏଇ ପରିପେକ୍ଷୀରେ, ଗାଁବିଷୟରେ ଆଲୋଚନା ବେଳେ ଥଟ୍ଟା ମଜାରେ ଲୋକେ କୁହନ୍ତି ଏ ଗାଁ ନା ଶାସନ ବଦଳରେ ଜୋଇଁଗାଁ କହିଲେ ଠିକ୍ ରହିବ । ତା'ର ତାତ୍ପର୍ଯ୍ୟ ହେଲା, ଜନସଂଖ୍ୟା ବଢିବା ସହିତ ଝିଅମାନେ ଗାଁର ଟେକକୁ ହୃଦୟଙ୍ଗମ କରି ବାହା ହେବା ପରେ ବି ଗାଁରେ ହିଁ ରହିବାକୁ ପସନ୍ଦ କରିବାରୁ ସ୍ୱାମୀ ଓ ପରିବାରସହ ଏ ଗାଁରେ ବସବାସ କଲେଣି ।

ଗାଁର ମୂଳକୀର୍ତ୍ତି ପାଠାଗାର ଗୃହର ମରାମତି ହୋଇ ସ୍ମୃତି ସ୍ୱରୂପ ଯଦିଓ ରଖାଯାଇ ଅଛି, ବହି ନାହିଁ । ଉଚ୍ଚ ଇଂରାଜୀ ବିଦ୍ୟାଳୟ ଅଛି, ତା'ର କଳେବରରେ ଯଥେଷ୍ଟ ଉନ୍ନତି ଆସିଛି ସତ, କିନ୍ତୁ ତା'ର ଟେକ ଓ ସୁନାମ ନାହିଁ । ରାସ୍ତାଘାଟର ଯଥେଷ୍ଟ ପରିବର୍ତ୍ତନ ଘଟିଅଛି । ଶୂନ ଗାଡିଟିଏ କିଣିବାପାଇଁ ସମ୍ବଳ ନଥିବା ସ୍ଥଳେ, ଏବେ ଘରେ ଘରେ ମଟରସାଇକେଲ ଓ କାର ମଧ୍ୟ ଅଛି। ଗାଁରେ ଡାକ୍ତରଖାନା ଖୋଲିଗଲାଣି । ଏ ସବୁ ପରିବର୍ତ୍ତନ ସାଙ୍ଗକୁ ଲୋକମାନଙ୍କର ଚାଲିଚଳଣି, ଆଚଭାବରେ ବହୁତ ପରିବର୍ତ୍ତନ ଘଟଛି । ସ୍ନେହ ଓ ସୌହାସର୍ଦ୍ଦ୍ୟପୂର୍ଣ୍ଣ୍ୟ ବାତାବରଣ, ଯାହାକୁ ନେଇ ଆମେ ଗର୍ବ କରୁଥିଲୁ, ତା'ର ଅବକ୍ଷୟ ଘଟି ଲୋକ ମାନଙ୍କର ମନରେ ପରଶ୍ରୀକାତରତା ଭାବ ଉଦ୍ରେକ ହେବାର ପରିଲକ୍ଷିତ ହେଉଅଛି ।

ଏକଥା କିନ୍ତୁ ସତ୍ୟ ଯେ, ପରିବର୍ତ୍ତନଶୀଳ ଦୁନିଆରେ ଲୋକମାନଙ୍କର ଜୀବନଶୈଳୀରେ ଉନ୍ନତି ଆସିବା ଏକ ଶୁଭଲକ୍ଷଣ । ତେଣୁ ପୁରୁଣା ପାରମ୍ପରିକ ଚିନ୍ତାଧାରା ବଦଳରେ ଏ ପରିବର୍ତ୍ତନ ହିଁ ଆଣି ଦେଇଛି ଆମପାଇଁ ନୂତନ ଦିଗନ୍ତ, ଗଠନମୂଳକ ଚିନ୍ତାଧାରା ଓ ବିଚାର । ଓଳିଏ ଖାଇ ଓଳିଏ ଉପବାସ ରହି ବଂଚିବା ପାଇଁ ଯଦିଓ ସଂଗ୍ରାମ କରିବାକୁ ପଡୁଥିଲା, ଆଜି ସେମାନଙ୍କ ପରପିଢିମାନଙ୍କର ଚାଲିଚଳଣୀ ଓ ପରିପୂର୍ଣ୍ଣତା ଦେଖିଲେ ମନରେ ଆସୁଛି ଅପ୍ରମିତ ଖୁସି ଓ ଆନନ୍ଦ। ପ୍ରଭୁଙ୍କ ଶୁଭଦୃଷ୍ଟି ସର୍ବଦା ପଡୁଥାଉ ଓ ଗାଁର ମହିମା କାଳକାଳକୁ ବଜାୟ ରହୁ ।

## ଆହ୍ୱାନ

ଗାଁର ଐତିହ୍ୟ ଓ ବର୍ତ୍ତମାନର ସ୍ଥିତିକୁ ଅନୁଧ୍ୟାନ କଲେ ସେଇ ଯୋଗଜନ୍ମା ମହାପୁରୁଷମାନଙ୍କର ସ୍ୱପ୍ନକୁ ସାକାର କରିବାପାଇଁ ଏଇ ପଲ୍ଲୀ ଗାଁର ସୁଯୋଗ୍ୟ ସନ୍ତାନମାନେ କେବଳ ରାଜ୍ୟରେ ନୁହେଁ ଦେଶବିଦଶରେ ଖ୍ୟାତି ଅର୍ଜନ କରିପାରିଛନ୍ତି । କିନ୍ତୁ ଗଭୀର ଅନୁଶୀଳନ କଲେ,ସମସ୍ତଙ୍କ ମନରେ ଅନେକ ପ୍ରଶ୍ନ ଉଦ୍‌ବେଳିତ ହୋଇଉଠୁଅଛି । ସେ ସମୟର ଅଭାବ ଅସୁବିଧା କଥା ବିଚାରକୁ ନେଲେ, ରାସ୍ତା ନାହିଁ, ସ୍ୱାସ୍ଥ୍ୟସେବା ଅପହଞ୍ଚ ଦୂରରେ, ଶିକ୍ଷା ବ୍ୟବସ୍ଥାରେ ବଡ ବ୍ୟବଧାନ, ରୋଜଗାର ପାଇଁ ଯଥେଷ୍ଟ ସୁଯୋଗର ଅଭାବ। ତଥାପି ସଭିଏଁ ଖୁସି ଥିଲେ । ବର୍ତ୍ତମାନ ସବୁ କ୍ଷେତ୍ରରେ ଉନ୍ନତି ହୋଇଛି ସତ, କାହିଁକି କେଜାଣି ସଭିଙ୍କ ମନରେ ବିଷର୍ଣ୍ଣତା ଛାଇ ରହିଛି । କାରଣ ସମୟକ୍ରମେ, ଯାହାସବୁ ହାସଲ

କରାଯାଇଅଛି, କ୍ରମ ବର୍ଦ୍ଧିଷ୍ଣୁ ଜନସଂଖ୍ୟା ଓ ତା' ସହ ଆଧୁନିକ ଜୀବନଶୈଳୀ ବିଚାରକୁ ନେଲେ, ସେ ସବୁ ଯଦିଚ ନିଶ୍ଚିତ ରୂପେ ଶୁଭ ସୂଚକ ଓ ସ୍ୱାଗତ ଯୋଗ୍ୟ, କିନ୍ତୁ ତା' ତୁଳନାରେ ହରାଇଛନ୍ତି ବେଶିକିଛି । ଜଙ୍ଗଲ ଅବକ୍ଷୟ ଘଟି ପରିବେଶ ସନ୍ତୁଳନରେ ବ୍ୟାଘାତ ଘଟିଛି । ସ୍ୱଳ୍ପ ବା ଅନାବୃଷ୍ଟି ଯୋଗୁଁ ଚାଷକାମରେ ବ୍ୟାଘାତ ଘଟିଛି । ନଦୀରେ ଜଳର ଅଭାବ ନେଇ ଜଳସେଚନ ବ୍ୟବସ୍ଥାରେ ବିଭ୍ରାଟ ଘଟିଛି। ଶ୍ରମିକଗୋଷ୍ଠି କୌଳିକବୃତ୍ତି (କୃଷି) ପ୍ରତି ବିମୁଖ ହୋଇ ସହରାଭିମୁଖ ହେବାରୁ ଚାଷୋପଯୋଗୀ ଜମି ପଡିଆ ପଡୁଛି । ଶିକ୍ଷାର ବ୍ୟବସ୍ଥା ଅଛି କିନ୍ତୁ ଗୁଣାତ୍ମକ ଶିକ୍ଷା ପ୍ରାପ୍ତ ନହେବାରୁ ମାନପତ୍ର ଯଦିଓ ମିଳିଯାଉଛି, ଉପଯୁକ୍ତ ନିଯୁକ୍ତି ମିଳୁନାହିଁ । ଡାକ୍ତରଖାନା ଅଛି କିନ୍ତୁ ଚିକିତ୍ସା ପାଇଁ ରୋଗୀ ଭରଷା ପାଇପାରୁନାହିଁ । ତେଣୁ ପ୍ରତ୍ୟେକ ଗ୍ରାମବାସୀଙ୍କର ଗୁରୁ ଦାୟୀତ୍ୱ ହେଲା, ଏଇ ଆଦର୍ଶ ଗ୍ରାମର ପ୍ରକୃତ ସଞ୍ଜ୍ଞାକୁ ହୃଦୟଙ୍ଗମ କରି ନିସ୍ୱାର୍ଥପର ଭାବନେଇ ଉଦ୍ୟମ ଜାରି ରଖିବାକୁ ହେବ ।

ପାରମ୍ପରିକ ଧାନ ଚାଷ ସହିତ ଅର୍ଥକରୀ ଫସଲ ପ୍ରତି ବିଶେଷ ଧ୍ୟାନ ଦେଲେ ହିଁ ଚାଷୀର ଆୟ ବଢିବ ଓ ସେ ଅତ୍ମନିର୍ଭରଶୀଳ ହୋଇପାରିବ । ଜଳସେଚନର ସୁବନ୍ଦୋବସ୍ତ ହୋଇପାରିଲେ ବର୍ଷସାରା ଜମିରେ ଫସଲ କରି ଲାଭବାନ ହୋଇପାରିବ । ତେଣୁ ଉଛେଇ ନାଗଝରର ଆନିକଟର ଉଚ୍ଚତା ବଢାଇ ବର୍ଷସାରା ଜଳସେଚନର ବ୍ୟବସ୍ଥା କରିବା ଲକ୍ଷ୍ୟରେ ଉଚିତ ପଦକ୍ଷେପ ନେବାପାଇଁ ପ୍ରଚେଷ୍ଟା ଜାରି ରଖିବାକୁ ହେବ ।

ଜଙ୍ଗଲ ଅବକ୍ଷୟ ରୋକାଯିବା ପାଇଁ ଉପଯୁକ୍ତ ସଂରକ୍ଷଣ ବ୍ୟବସ୍ଥା ସହ ଘରୋଇ ଓ ସରକାରୀ ଜମିରେ ବନୀକରଣ ଯୋଜନା ଲାଗୁ କରି ନୂତନ ଜଙ୍ଗଲ ସୃଷ୍ଟି କରିବା ଯୋଜନାରେ ସାମିଲ ହୋଇ ପରିବେଶକୁ ସୁରକ୍ଷା କରିବା ସମସ୍ତଙ୍କ କର୍ତ୍ତବ୍ୟ ହେବା ଉଚିତ ।

ବର୍ତ୍ତମାନ ପ୍ରଚଳିତ ବୃତ୍ତିଗତ ଶିକ୍ଷା ବ୍ୟବସ୍ଥା ସହିତ ସ୍ୱ ଓ ସମାଜ କଲ୍ୟାଣ ଆଭିମୁଖ୍ୟକୁ ପ୍ରସାର କରିବା ଅଭିପ୍ରାୟ ରଖି ଯୋଗ ଓ ଧର୍ମ ସମ୍ବନ୍ଧୀୟ ଶିକ୍ଷା ପାଠ୍ୟକ୍ରମରେ ରଖିବାକୁ ପ୍ରୟାସ କରାଯିବା ଉଚିତ। ଅନ୍ୟ ଦିଗ ପ୍ରତି ମଧ୍ୟ ଧ୍ୟାନ ଦେବାକୁ ହେବ। ଯଥା :

- ସ୍ୱାସ୍ଥ୍ୟର ଉନ୍ନତି
- ବାଣପୁରକୁ ରାସ୍ତାର ସଂଯୋଗିକରଣ

# ମୋ ବିଷୟରେ ପଦେ

ବୋଧହୁଏ ମୁଁ ଶିଶୁ କିମ୍ବା ପ୍ରଥମ ଶ୍ରେଣୀରେ ପଢୁଥିବା ବେଳେ ଯୌଥ ପରିବାରରୁ ଆମେ ଅଲଗା ହୋଇ ଅନ୍ୟ ଏକ ଘରେ ବାସ କଲୁ । ନାନୀର ବିବାହ ସରିଥିଲା କିନ୍ତୁ ଶାଶୁଘର ଯାଇନଥାଏ । ଯଦିଓ ମୁଁ ଛୋଟଥିଲି, କିନ୍ତୁ ଆର୍ଥିକ ପରିସ୍ଥିତିର ଚାପ ବିଷୟରେ ନନାବୋଉଙ୍କ ଆଲୋଚନା, ମୋ'ମନରେ କିଛି ପ୍ରଭାବ ପକାଉଥିଲା । ସେପରି ଏକ ଘଡିସନ୍ଧି ମୁହୂର୍ତ୍ତରେ କିନ୍ତୁ ଗାଁ ଲୋକଙ୍କର ବଦାନ୍ୟତା ବହୁ ପରିମାଣରେ ନନାଙ୍କ ଦୁଃଖକୁ ଲାଘବ କରିଥିଲା । ଗାଁର ବୈଦ୍ୟଘର, ବଡକୁଟୁଣି ଉଛବପାତ୍ର ପରି କେତେକ ବଦାନ୍ୟ ବ୍ୟକ୍ତିଙ୍କ ସାହାଯ୍ୟ ଭୁଲିହେବ ନାହିଁ। ନନା ଅକ୍ଳାନ୍ତ ପରିଶ୍ରମ କରି ମାଟିରେ ମାଟିହୋଇ ଜମିରେ ଲାଗିଲେ । ଯେତେ ଅସୁବିଧା ଥିଲେ ବି ଭାଙ୍ଗି ପଡିନଥିଲେ କି କାହା ଆଗରେ ହାତ ପତାଇ ନଥିଲେ । ପ୍ରଥମ ଫସଲ ଆଦାୟ ହେବା ପରେ ସେ ଆଉ ପଛକୁ ଫେରି ଚାହିଁ ନାହାଁନ୍ତି । ଦୃଢସଂକଳ୍ପ, ଅଦମ୍ୟ ସାହାସ, ସକାରାତ୍ମକ ମନୋଭାବ ନେଇ ଆଗକୁ ଚାଲିବାରୁ ଭାଗ୍ୟ ସାଥିଦେଲା । ସମୟକ୍ରମେ, ଜମିରେ କେନାଲ ପାଣି ମାଡିବାରୁ ଆଦାୟ ମଧ୍ୟ ବଢିଲା । ଈଶ୍ୱରଙ୍କ ଆଶୀର୍ବାଦ ଓ ଲିଙ୍ଗରାଜ ମିଶ୍ରଙ୍କ ପ୍ରଚେଷ୍ଟାରେ ନୂଆକରି ଖୋଲାଯାଇଥିବା ଡାକଘରେ ସେ ପତ୍ର ବିତରକ ରୂପେ ଯୋଗ ଦେଲେ । ମାସିକ ଦରମା କୋଡିଏ ଟଙ୍କା । ମୋ' ନନା ବଡ ସ୍ୱାଭିମାନୀ ଓ ଆତ୍ମନିର୍ଭରଶୀଳ । ନିଜ ଶକ୍ତି ଉପରେ ତାଙ୍କର ଯଥେଷ୍ଟ ଭରସା ଥିଲା । ସୀମିତ ସମ୍ବଳ ମଧ୍ୟରେ ସବୁ ଇଚ୍ଛା ତ ପୂରଣ କରିବା ସମ୍ଭବ ହେବନାହିଁ, ତେଣୁ ତାଙ୍କ ପାଇଁ ମିତବ୍ୟୟତା ହିଁ ଥିଲା ଏକମାତ୍ର ପନ୍ଥା । ଚାଷରୁ ଯାହା ଆଦାୟ କରୁଥିଲେ ତା' ସାଙ୍ଗକୁ ଡାକକାମରୁ ଯେଉଁ ୨୦ ଟଙ୍କା ଦରମା ପାଇଲେ, ଏକ ବିଳାସପୂର୍ଣ୍ଣ ଜୀବନ ବିତାଇବା ଯଦିଓ

ତାଙ୍କପାଇଁ ସ୍ୱପ୍ନ ଥିଲା, କିନ୍ତୁ ଅକ୍ଳାନ୍ତ ପରିଶ୍ରମ କରି ପରିବାର ସଦସ୍ୟଙ୍କର ସବୁ ଅଭାବ ମେଣ୍ଟାଇବାପାଇଁ ଯଥାସମ୍ଭବ ଚେଷ୍ଟା କରିଥିଲେ । ଆମର ଅଭିଯୋଗ "ଆମେ କାହିଁକି ଅନ୍ୟ ମାନଙ୍କ ପରି ସସ୍ୱଚ୍ଛନ୍ଦ ଜୀବନ ବିତାଇପାରିବାନି" ଶୁଣି ବି ବିବ୍ରତ ନ ହୋଇ, ତାଙ୍କ ନୀତିରେ ଅଟଳ ରହିବାର କାରଣ ଆମେ ସମସ୍ତେ ପରିଣତ ବୟସରେ ହିଁ ଅନୁଭବ କଲୁ ।

ଆମକୁ ଉଚ୍ଚ ଶିକ୍ଷା ଦେବାର ଅଭିଳାଷ ତାଙ୍କର ଥିଲା । କିନ୍ତୁ କେବେ ବି ପ୍ରକାଶ କରି ନଥିଲେ । ସେ ଜାଣିଥିଲେ ଗାଁରେ ଉଚ୍ଚ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା ହେବା ଫଳରେ ପିଲାମାନଙ୍କୁ ଅନ୍ତତଃ ମାଟ୍ରିକ୍ ପଢାଇ ପାରିବେ ଓ ଚାକିରି ମଧ୍ୟ ମିଳିଯିବ । ମୁଁ ମାଟ୍ରିକ୍ ପାଶ୍ କଲି । ଚାକିରି ପାଇଁ ମାମୁଁଙ୍କଘରକୁ (ବ୍ରହ୍ମପୁର) ଯାଇ ନିଯୁକ୍ତି ପଞ୍ଜୀକରଣ ସଂସ୍ଥାରେ ମୋ'ନାମ ପଞ୍ଜୀକରଣ କଲି । କିନ୍ତୁ ମନ ଯଦିଓ ହେଉଥାଏ ଆଗକୁ ପଢିବାକୁ ଅର୍ଥ ବାଧକ ସାଜିଲା । ତେବେ ନାନା କଳ୍ପନା ଜଳ୍ପନାର ଅନ୍ତ ଘଟିଲା କୃଷି ମହାବିଦ୍ୟାଳୟରେ ଅନିଚ୍ଛାସତ୍ତ୍ୱେ ନାମ ଲେଖାଇ ଦେବା ପରେ, କେବଳ ସରକାରଙ୍କଠାରୁ ଶିକ୍ଷାଋଣର ପ୍ରାବଧାନ ଥିବା ହେତୁ । ତେବେ ଈଶ୍ୱରଙ୍କ ଇଚ୍ଛା ଭିନ୍ନ । ମାଟ୍ରିକ୍ ପରେ ହିଁ ମୋ' ପଢାରେ ଡୋର ବନ୍ଧା ହେବା ପରିବର୍ତ୍ତେ ମୁଁ କୃଷିବିଜ୍ଞାନରେ ସ୍ନାତକ ଓ ସ୍ନାତକୋତ୍ତର ଶିକ୍ଷା ସମାପ୍ତ କରିପାରିଲି । ସବୁ ସେଇ ଇଚ୍ଛାମୟଙ୍କ ନିର୍ଦ୍ଦେଶ ଓ ନନାଙ୍କ ଆଶୀର୍ବାଦ ।

ଯଦିଓ ପଢାଶେଷ ପରେ କୃଷି ବିଭାଗରେ ଚାକିରି ମିଳି ଯାଇଥିଲା, କିନ୍ତୁ ପ୍ରଥମରୁ ସରକାରୀ ଚାକିରି ପ୍ରତି ସ୍ପୃହା ନଥିବାହେତୁ ପ୍ରଣୀତ ନିୟମ ଯେତେ ସ୍ୱଚ୍ଛ, ବ୍ୟବହାରିକ ଦିଗ ଭିନ୍ନ ଅନୁଭୂତ ହେବାରୁ ଅଣ ନିଶ୍ୱାସୀ ଲାଗୁଥିଲା । ତେଣୁ ମନରେ ସରକାରୀ ଚାକିରି ତ୍ୟାଗ କରିବାର ଦାନା ବାନ୍ଧିଲା । ଈଶ୍ୱରଙ୍କ ଆଶୀର୍ବାଦରେ ପ୍ରଥମେ ଗ୍ରାମ୍ୟ ବ୍ୟାଙ୍କ ଓ ପରେପରେ ଷ୍ଟେଟ ବ୍ୟାଙ୍କରେ ଚାକିରି ମିଳିଗଲା । ଜୀବନରେ ସବୁ କିଛି ନିଜ ଇଚ୍ଛାରେ ଘଟେ ନାହିଁ । କେତେ ଅଙ୍କାବଙ୍କା ରାସ୍ତା ଦେଇ ଗତି କରିବାକୁ ପଡେ । ସବୁ ସେଇ ନିରାମୟ ପ୍ରଭୁଙ୍କ କୃପା ଓ ମାତାପିତାଙ୍କ ଆଶୀର୍ବାଦ ।





## ବୈକୁଣ୍ଠନାଥ ମହାପାତ୍ର

ନୟାଗଡ ଜିଲ୍ଲା ଅନ୍ତର୍ଗତ କଜଳାଇପଲ୍ଲୀ ଗ୍ରାମରେ ୧୯୪୬ ମସିହା ମାର୍ଚ୍ଚ ମାସ ୩୧ ତାରିଖ ଦିନ ଲେଖକଙ୍କ ଜନ୍ମ । ସେ ଓଡ଼ିଶା କୃଷି ବୈଷୟିକ ବିଶ୍ୱବିଦ୍ୟାଳୟ ଅଧିନସ୍ଥ କୃଷି ମହାବିଦ୍ୟାଳୟରୁ ସ୍ନାତକୋତ୍ତର ଶିକ୍ଷା ଲାଭକରି କିଛି ବର୍ଷ ଓଡିଶା ସରକାରଙ୍କ ଅଧିନରେ କାର୍ଯ୍ୟ କରିବା ପରେ ଭାରତୀୟ ଷ୍ଟେଟ ବ୍ୟାଙ୍କରେ ଯୋଗଦେଇ ବିଭିନ୍ନ ପଦ ପଦବୀରେ ଦକ୍ଷତାର ସହ କାର୍ଯ୍ୟ ସମ୍ପାଦନା କଲେ । ୨୦୦୬ ମସିହାରେ ସେବାରୁ ନିବୃତ୍ତ ହେବା ପରଠାରୁ ନିଜ ଗାଁର ଉନ୍ନତିମୂଳକ କାର୍ଯ୍ୟ, ସମାଜସେବା କରିବା ସହ ଆଧ୍ୟାତ୍ମିକ ଓ ସାରସ୍ୱତ ସାଧନାରେ ବ୍ରତି ରହି ତାଙ୍କର ଅବସରକାଳୀନ ସମୟ ଧର୍ମଶାସ୍ତ୍ର ଆଲୋଚନା ଓ ଲେଖାଲେଖିରେ ନିୟୋଜିତ କରୁଛନ୍ତି । ତାଙ୍କ 'ଶୁକ ପରୀକ୍ଷିତ କଥା" ବହିଟି ପାଠକମାନଙ୍କର ବେଶ୍ ଆଦୃତ ଲାଭ କରିପାରିଛି ।

ପଲ୍ଲୀ ଜୀବନର ଅନୁଭୁତି ଓ ନିଜ ଗାଁର ସ୍ମୃତିକୁ ସାଇତି ରଖିବା ଅଭିପ୍ରାୟ ନେଇ "ମୋ ଗାଁ ମୋ ସ୍ମୃତି" । ତାଙ୍କର ଏ ପ୍ରୟାସ ନିଶ୍ଚିତରୂପେ ପାଠକମାନଙ୍କର ହୃଦୟସ୍ପର୍ଷ କରିବ ।

– ପ୍ରକାଶିକା